# କଣାମାମୁଁ

# ଓ

# କାନ୍ତକବି ଲକ୍ଷ୍ମୀକାନ୍ତ



ଅଧ୍ୟାପକ ପଞ୍ଚାନନ ମିଶ୍ର

ଏମ୍. ଏ. ଏଲ୍‌ଏଲ୍. ବି

ଡ. ଏ. ଭି. କଲେଜ, ଟିଟିଲାଗଡ଼

# କଣାମାମୁଁ

# ଓ

# କାନ୍ତକବି ଲକ୍ଷ୍ମୀକାନ୍ତ



ଅଧ୍ୟାପକ ପଞ୍ଚାନନ ମିଶ୍ର

ଏମ୍. ଏ. ଏଲ୍ଏଲ୍. ବ

ଡ. ଏ. ଭ. କଲେଜ, ଟିଟିଲାଗଡ଼

# - ସୂଚୀପତ୍ର -

ପୃଷ୍ଠା

## କଣାମାମୁଁର ରଚୟିତା ୰ କାନ୍ତକବି ଲକ୍ଷ୍ମୀକାଂତ ମହାପାତ୍ରଙ୍କ ଜୀବନୀ,

ତା ୯-୧୨-୧୮୮୮ ରେ କଟକରେ ଲକ୍ଷ୍ମୀକାଂତଙ୍କ ଜନ୍ମ । ମାର୍ଗଶୀର ମାସ ମାଣବସା ଗୁରୁବାର ଦିନ ଜନ୍ମ ହୋଇଥିବାରୁ ତାଙ୍କ ନାମ ଦିଆଗଲା ଲକ୍ଷ୍ମୀକାଂତ । ପିତାଙ୍କ ନାମ ଶ୍ରୀ ଧୃଷ୍ଟ ଭଗବତ ପ୍ରସାଦ ସାମଂତ ରାୟ ମହାପାତ୍ର ଓ ମାତାଙ୍କ ନାମ ରାଧାମଣି ଦାସୀ, ପିତା ଭଗବତ ବାବୁ ବାଲ୍ୟକାଳରୁ ମାମୁଘରେ ମାତୃହରା ହୋଇ ବାଲେଶ୍ବରରେ ରହୁଥିଲେ । ପରେ ସେଠାରେ ସେ ଓକିଲାତି ଆରମ୍ଭ କଲେ । ସ୍ବ-ପ୍ରତିଭାବଳରୁ କାଂତ କବି ବାଲେଶ୍ବର ଜିଲ୍ଲା ସ୍କୁଲର ବୁଦ୍ଧିମାନ୍ ଓ ବିଖ୍ୟାତ ଖେଳାଳୀ ଛାତ୍ର ହିସାବରେ ପରିଚିତ ଥିଲେ । ତାଙ୍କର ପ୍ରିୟ ଖେଳମାନଙ୍କ ମଧ୍ୟରୁ ଟେନିସ୍, କ୍ରିକେଟ୍ ଓ ବେଡ଼୍ମିଣ୍ଟନ୍ ମୁଖ୍ୟଥିଲା ।

ଲକ୍ଷ୍ମୀକାନ୍ତଙ୍କ କ୍ରୀଡ଼ାପ୍ରିୟତା ଓ ପାଠପ୍ରତି କ୍ରମାଗତ ଅମନୋଯୋଗିତା ପିତାଙ୍କୁ ଚିନ୍ତାଗ୍ରସ୍ତ କରି ପକାଇଥିଲା । ଭଦ୍ରକରେ ନୂତନ ଭାବେ ଅଦାଲତ ଖୋଲିବାପରେ ପୁଅକୁ ଦେଖିବାପାଇଁ ଭଗବତବାବୁ ସେଠାକୁ ଚାଲିଆସିଲେ । ସେ ସମୟକୁ ମାମୁଁ ରାଜାରାମ ବାବୁଙ୍କ ହାତରେ ଲକ୍ଷ୍ମୀକାଂତକୁ ଭଗବତ ବାବୁ ସଁପି ଦେଇ ନିରକ୍ଷଣଭାର ପରିଚୟ ଦେଇଥିଲେ । ଲକ୍ଷ୍ମୀକାଂତଙ୍କ ମାମୁଁ ଓ ମା ଉଭୟେ ସାହିତ୍ୟାନୁରାଗୀ ଥିଲେ । ଲକ୍ଷ୍ମୀକାଂତ ଭଦ୍ରକ ସ୍କୁଲରେ ଭର୍ତ୍ତି ହେଲେ ସୁଦ୍ଧା ଜଗନ୍ନାଥପୁର ତାଙ୍କ ମୁଖ୍ୟସ୍ଥାନ ହୋଇ ଉଠିଲା । ସେ ଦିନେ ଯୁବକଙ୍କ ସହ ନାଟକ ଆରମ୍ଭ କଲେ । ଭଗବତ ପୁଅର ଏତଦ୍ ଆଚରଣରେ ବ୍ୟତିବ୍ୟସ୍ତ ହୋଇ କଟକ ପଠାଇଦେଲେ । ମାମୁଁ ରାଜାରାମ ମଧ୍ୟ ତାଙ୍କ ସଙ୍ଗେ

ଆସିଲେ । ଏ ସମୟକୁ ଲକ୍ଷ୍ମୀକାନ୍ତଙ୍କୁ ୧୪।୧୫ ବର୍ଷ ବୟସ ହୋଇଥିଲା । ଭଗବତି ବାବୁଙ୍କଠାରୁ ସାହାଯ୍ୟପ୍ରାପ୍ତ ଉମାଚରଣ ଦାସ ଲକ୍ଷ୍ମୀକାନ୍ତଙ୍କ ଅଭିଭାବକ ହେଲେ । ୧୯୦୪ ରେ ରେଭେନ୍ସା କଲେଜ ହଷ୍ଟେଲରେ ରହିଲେ । ଏଇଠୁ ସେ ଲୁଚିଛପି କବିତା ଲେଖା ଆରମ୍ଭ କଲେ ।

ତାଙ୍କ କବିତା ରଚନା ଏକ ଆକର୍ଷଣୀୟ ଘଟଣାରୁ ଜଣାଯାଏ । ଥରେ ଉମାଚରଣ ବାହାରକୁ ଗଲାବେଳେ ଅଙ୍କ କଷିବାକୁ କହିଗଲେ । ପରଦିନ ସକାଳେ ଉମାଚରଣ ଅଙ୍କ ଖାତା ଦେଖିଲାବେଳେ ଗୋଟିଏ ବଙ୍ଗାଳି କବିତା ଓ ଅନ୍ୟଟି ଓଡ଼ିଆ କବିତା ଲେଖା ହୋଇଥିଲା । ଉମାଚରଣ ଏଥିରେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଲକ୍ଷ୍ମୀକାନ୍ତଙ୍କୁ ମାରିଲେ । ଗୋପବନ୍ଧୁ ଦାସଙ୍କ ଆବିର୍ଭାବ ଏ ସମୟରେ ହୋଇଥିଲା ରେଭେନ୍ସାରେ । ଉମାଚରଣ ଗୋପବନ୍ଧୁଙ୍କୁ ସମସ୍ତ ବିଷୟ କହିଲେ । ଗୋପବନ୍ଧୁ ଲକ୍ଷ୍ମୀକାନ୍ତଙ୍କ ଏପରି ରଚନାରେ ବିରକ୍ତ ନ ହୋଇ ପଦ୍ୟର ସୁନ୍ଦର ସନ୍ନିପାତରେ ଆନନ୍ଦ ହୋଇ ପଚାରିବାରୁ ଲକ୍ଷ୍ମୀକାନ୍ତ ଏପରି ଲେଖନ୍ତି ବୋଲି କହିଲେ ।

୧୯୦୭ ରେ ଲକ୍ଷ୍ମୀକାନ୍ତ ଏଣ୍ଟ୍ରାନ୍ସ ପାସ କଲେ । ତା ପରେ ରେଭେନ୍ସାରେ ଆଇ. ଏ ପଢ଼ି ବି.ଏ. ପଢ଼ିବାକୁ କଲିକତା ଗଲେ । ସେଠାରେ ରିପନ୍ କଲେଜରେ ନାମ ଲେଖାଇଲେ । ଲକ୍ଷ୍ମୀକାନ୍ତଙ୍କ ଜାତିୟବୋଧତା ଅନେକ ସମୟରେ ବଙ୍ଗାଳି ଛାତ୍ରଙ୍କ ହୀନମନ୍ୟତା ଯୋଗୁଁ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଉଥିଲା । ରେଭେନ୍ସାରୁ ପଦାର୍ଥ ବିଜ୍ଞାନ ଉଠି ଯାଇଥିବାରୁ ସେ ବାଧ୍ୟ ହୋଇ ଆଇ.ଏ.ରେ ଅଙ୍କ ନେଇ ଫେଲ ହୋଇଥିଲେ । ଦ୍ୱିତୀୟରେ ୧୯୧୧ରେ ସେ ପାସ କଲେ । ଛାତ୍ରାବସ୍ଥାରେ ଲକ୍ଷ୍ମୀକାନ୍ତଙ୍କ କବିତା ରଚନା ପ୍ରତିଭା ଯୋଗୁଁ "ପଏଟ୍ ଲରେଟ୍" ବୋଲି ବନ୍ଧୁମାନେ କହୁଥିଲେ ।

୧୯୧୨ ରେ ପ୍ରଥମ ହୋଇ କାଞ୍ଚିକାବେରୀ ଅଭିନୀତ ହେଲା । ଉକ୍ତ ନାଟକରେ ଲକ୍ଷ୍ମୀକାନ୍ତଙ୍କୁ ସଂଗୀତ ନିର୍ଦ୍ଦେଶନାର ଭାରଦିଆ ଯାଇଥିଲା । ଏ ସମ୍ପର୍କରେ ଏକ ରହସ୍ୟମୟ ଘଟଣା ହେଉଛି ଯେ ଉକ୍ତ ନାଟକରେ ସେ ଏପରିଭାବରେ ଏକ ନର୍ତ୍ତକୀ ଭୂମିକା ନିର୍ବାହ କରିଥିଲେ ଯେ ପରଦିନ ଛାତ୍ରମାନେ ଗୋଟିଏ ଝିଅକୁ ନଚେଇବାର ଗର୍ହିତକର କାର୍ଯ୍ୟପାଇଁ ଅଧ୍ୟକ୍ଷଙ୍କ ନିକଟରେ ଅଭିଯୋଗ କରିଥିଲେ । ଶେଷରେ ସମସ୍ତଙ୍କ ସନ୍ଦେହ ଅଧ୍ୟକ୍ଷ ସଂଙ୍କ ସମ୍ମୁଖରେ ଦୂର ହୋଇଗଲା । ଏଇ ଛାତ୍ରାବସ୍ଥାରେ ସେ ବାଲେଶ୍ୱର ସହର ଶୁନହାଟର ଜମିଦାର ପ୍ରସିଦ୍ଧ ସାମନ୍ତ ପରିବାରର ଲଲମୋହନ ଦାସଙ୍କ ଦୁହିତା ଲବଂଗଲତାର ପାଣିଗ୍ରହଣ କରିଥିଲେ ।

ଲକ୍ଷ୍ମୀକାନ୍ତଙ୍କ ଲେଖାର ସୁକ୍ଷ୍ମରୁଚି ନିମିତ୍ତ ଫକୀର ମୋହନ ଥରେ ତାଙ୍କୁ କୁଣ୍ଢାଇ ତାଙ୍କ ଦେହରେ ହାତିଘଷି କହିଥିଲେ- "ଲେଖିଯା, ଲେଖିଯା, ସୁନା ରହିଯିବ, ଖାଦ ପାଉଁଶ ହୋଇଯିବ କାଳାଗ୍ନିରେ ।" ସାହିତ୍ୟିକ, ସାହିତ୍ୟପ୍ରେମୀ, ସଂପାଦକ ଓ ପାଠକମାନେ ଆଦରରେ ଆପଣାର କରିବାପାଇଁ ଲକ୍ଷ୍ମୀକାନ୍ତଙ୍କୁ 'କବି' ପରିବର୍ତ୍ତେ 'କାନ୍ତକବି' ବୋଲି କହିବାକୁ ଲଗିଲେ । ୧୯୩୪ ସାଲରେ ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ସାହୁ ଏହି ନାମର ପୁନରୁଦ୍ଧାର କଲେ । ତାଙ୍କର ସେବା ମନୋବୃତ୍ତି ଛାତ୍ର ସମୟରେ ଦେଖା ଦେଇଥିଲା । ସେ ସଚ୍ଚିଦ୍ର ନାମକ ଜନୈକ ଛାତ୍ରଙ୍କୁ ବିସୂଚିକା ବେଗରୁ ମୁକ୍ତ କରିବାପାଇଁ ଆପ୍ରାଣ ଚେଷ୍ଟାକରି କୃତକାର୍ଯ୍ୟ ହୋଇଥିଲେ ।

ତାଙ୍କର ଛାତ୍ରଜୀବନ ୧୯୧୩ ରେ ଶେଷହେଲା । ବି.ଏ. ପରେ ସେ ଯେତେବେଳେ ବି. ଏଲ୍. ପରୀକ୍ଷାପାଇଁ ପ୍ରସ୍ତୁତ ହେଉଥିଲେ ସେ-ସମୟରେ ତାଙ୍କୁ ଜ୍ୱର ହେଲା ଏବଂ କ୍ରମେ ତାହା ମହାବ୍ୟାଧି ( କୁଷ୍ଠ ) ରେ,

ପରିଣତ ହେଲା । ଅନେକ ଚିକିତ୍ସାପରେ ମଧ୍ୟ ତାହା ଆଉ ଉପଶମ ହେଲାନି । ମାତ୍ର ଏ ବ୍ୟାଧିର ଅବ୍ୟର୍ଥ ମହୌଷଧ ହେଲା ସଙ୍ଗୀତ । ୧୯୨୧ ରେ ସେ କୁଳଦେବତା ଗୋପୀନାଥଙ୍କ ନାମ ଅନୁଯାୟୀ "ଗୋପୀନାଥ ସଙ୍ଗୀତ ସମାଜ" ଗଠନ କଲେ । ଏ ସମାଜ, ପରେ ଅପେରା ରୂପରେ ଜନସମକ୍ଷରେ ପ୍ରକଟିତ ହେଲା । ବିଭିନ୍ନ ନାଟକ ଯଥା :- ଶରତ୍ରାସ, କାଳୀୟଦଳନ, ବ୍ରଜବର୍ଜନ ଇତ୍ୟାଦି ଅଭିନୀତ ହେଲା । ପୂର୍ବସ୍ଥ ଓଡ଼ିଶୀ ସଙ୍ଗୀତର ମୁଖ୍ୟ ପ୍ରଚାରକ ଗୋପାଳକୃଷ୍ଣ, ବନମାଳୀ, ଅଭିମନ୍ୟୁ, ଓ ଭକ୍ତଚରଣଙ୍କ ସାହିତ୍ୟ ପ୍ରଚାରର ଧାରା ପ୍ରବର୍ତ୍ତନ କଲେ ଲକ୍ଷ୍ମୀକାନ୍ତ । ସେ ତାଙ୍କ ନାଟକ ମାନଙ୍କରେ ଶାସ୍ତ୍ରୀୟ ସଙ୍ଗୀତକୁ ସ୍ଥାନ ଦେଲେ । ଏ ସମୟର ଅନ୍ୟତମ ନାଟ୍ୟକାର କାଳୀଚରଣ ପଟ୍ଟନାୟକଙ୍କ ଭାଇ (ସ୍ନେହରେ) ହୋଇଥିଲେ, କାନ୍ତକବି ଅନ୍ୟଏକ ନାଟକର ପୂର୍ବଧାରା ମିଳିତ ହେଲା କାନ୍ତକବି ଦଳସଙ୍ଗେ । ସେହେଉଛନ୍ତି ଭଦ୍ରକର କୃଷ୍ଣ ପ୍ରସାଦ ବସୁ । ଏ ସମଗ୍ର ରାସଦଳର ଗତି ପ୍ରବର୍ତ୍ତନ ହେଲା ଐତିହାସିକ ନାଟ୍ୟଦଳକୁ ।

**୧୯୨୯** ବେଳକୁ ଲକ୍ଷ୍ମୀକାନ୍ତ ଗଙ୍ଗାରମୋହନଙ୍କ ମୁଦ୍ରାଯନ୍ତ୍ର କିଣି ଆଣି 'ଗୋପୀନାଥ ପ୍ରେସ' ନାମ ଦେଲେ । ଏଠାରୁ ପତ୍ରିକା ପ୍ରକାଶ କରିବାର ସୁବିଧା ହେଲା । ୧୯୩୭ ବେଳକୁ ତାର ପ୍ରକାଶନ ଆରମ୍ଭ ହେଲା । ସାହିତ୍ୟ କ୍ଷେତ୍ରରେ ତାଙ୍କ ନିର୍ଭୀକତା 'ଅସହଯୋଗର ଆତ୍ମକଥା' ରୁ ଅନୁମେୟ ।

**କାନ୍ତକବି** ନିଜେ ସମ୍ମୁଖବିପ୍ଳବୀ ନ ହେଲେ ମଧ୍ୟ ତାଙ୍କ ହୃଦୟ ସର୍ବଦା ବିପ୍ଳବ ଦିଗକୁ ଧାବିତ ହେଉଥିଲା । ସେ ପୁଅ ନିତ୍ୟାନନ୍ଦଙ୍କୁ ଲବଣ ସତ୍ୟାଗ୍ରହରେ ଯୋଗ ଦେବାପାଇଁ ପରାମର୍ଶ ଦେଇଥିଲେ । ପିତା ଭାଗବତ ପ୍ରସାଦ ଧୂର୍ତ୍ତ ବ୍ରିଟିଶ ସରକାରଙ୍କ ଅନ୍ୟାୟର ପ୍ରତିବାଦକରି ଓଡ଼ିଶା

କାଉନ୍‌ସିଲ୍ ସଭ୍ୟପଦରୁ ଇସ୍ତଫା ଦେଲେ । ତାପରେ ଶ୍ରୀ କମଳାକାଂତ, ଭଉଣୀ ଲେଖିକା କୋକିଳାଦେଈ କାରାବରଣ କଲେ । ବାଲେଶ୍ୱରରେ ସାନ ଭଉଣୀ ଜାହ୍ନବୀ ଦେବୀ ଓ ଭିଣୋଇ ଗୌରଗୋପାଳ ଦାସ ମଧ୍ୟ କାରାବରଣ କଲେ । ୧୯୪୨ରେ ସେତେବେଳେ ନିତ୍ୟାନନ୍ଦ ଓ ଗୌରଚନ୍ଦ୍ର କାରାରୁଦ୍ଧ ହେଲେ କାଂତକବି ଶାଳକ ବ୍ରଜ ମୋହନ ଦାସଙ୍କ ସାହାଚର୍ଯ୍ୟରେ 'ଡଗର' ଚଳାଇଲେ ।

ଭଦ୍ରକରେ ଥିବାବେଳେ ସେ ହେଡମାଷ୍ଟର ଗୋକୁଳାନନ୍ଦ ନାୟକ ଓ ନାଟ୍ୟକାର– ଅଭିନେତା ଯତୀନ୍ଦ୍ର କୁମାର ମୁଖାର୍ଜୀଙ୍କ ମିଶ୍ରଣରେ 'ଗୁଡ଼୍-ନାଇଟ୍‌କ୍ଲବ୍' ତିଆରି କରିଥିଲେ । ବିଦାୟବେଳେ ପ୍ରତ୍ୟେକ ରାତିରେ 'ଗୁଡ୍‌ନାଇଟ୍' କହିବା ଏ କ୍ଲବର ତାତ୍ପର୍ଯ୍ୟ ।

ଭଦ୍ରକରେ କାନ୍ତକବିଙ୍କ ଲେଖାଯୋଖା ମୁସଲମାନ ସଂପ୍ରଦାୟର ଜଣେ ମାମୁଁ ଥିଲେ । ଏହାହିଁ ହେଉଛି 'କଣାମାମୁଁ'ର ଉତ୍ସ ।

**୧୯୪୮** ରେ ଡଗର କଟକକୁ ଆସିଲା ପ୍ରକାଶପାଇଁ । ସେ ସମୟକୁ ଭଦ୍ରକରେ 'କଣାମାମୁଁ' ଲେଖା ଆରମ୍ଭ ହୋଇଯାଇଥିଲା ।

**୧୯୫୩** ଫେବୃୟାରୀ ୨୪ ତାରିଖ ରାତି ଘ ୧.୪୦ ମିନିଟରେ ଲକ୍ଷ୍ମୀକାଂତ କାନ୍ତମୟ ଶରୀର ତ୍ୟାଗ କରି ଅମରକାନ୍ତ ପ୍ରଦେଶକୁ ଚାଲିଗଲେ ।

**କାଂତକବିଙ୍କ ଲେଖାବଳୀ—**

କାଂତକବିଙ୍କ ଲେଖାମାନଙ୍କ ମଧ୍ୟରେ ନକଳିକା ( **Parody** )

ମୁଖ୍ୟବିଭାବ ସୃଷ୍ଟି କରିଛନ୍ତି । ବ୍ୟଂଗ କବିତାର ସେ ହେଉଛନ୍ତି ଅନ୍ୟତମ ପ୍ରତିଷ୍ଠାତା । ତାଙ୍କ ରଚିତ ଅନେକ କ୍ଷୁଦ୍ରଗଳ୍ପ ମଧ୍ୟରେ 'ବୁଢାଶଙ୍ଖାରି' ଏକ ଅଭିନବ ସୃଷ୍ଟି । 'ଅସହଯୋଗୀର ଆତ୍ମକଥା' ବତ୍ରିଶ୍ ରାଜନୀତିରେ ଏକ ସାହସିକ ପଦକ୍ଷେପ । ପ୍ରବନ୍ଧ ସାହିତ୍ୟରେ 'ହାସ୍ୟରସ' ଓ 'ସାହିତ୍ୟ ସୃଷ୍ଟିରେ ହାସ୍ୟରସ' ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ଦୁଇଟି ବିଶିଷ୍ଟ ଦାନ । ତାଙ୍କ ରଚନା ଅନ୍ୟାନ୍ୟ କାବ୍ୟ, ସାହିତ୍ୟ ମଧ୍ୟ ଓଡିଆ ସାହିତ୍ୟାକାଶରେ ଏକ ଏକ ଜ୍ୱଳନ୍ତ ତାରକା ସଦୃଶ ।

ଫକୀର ମୋହନଙ୍କ ପରବର୍ତ୍ତୀ ୩୫ ବର୍ଷ ପର୍ଯ୍ୟନ୍ତ ହାସ୍ୟରସର ସାହିତ୍ୟ ଅନ୍ଧକାରଚ୍ଛନ୍ନ ଥିଲବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ଫକୀରମୋହନଙ୍କ ମୃତ୍ୟୁପରେ ଓ ଲକ୍ଷ୍ମୀକାନ୍ତଙ୍କ ରଚନାକାଳ ମଧ୍ୟରେ ଅନ୍ୟ କେହି ଏ ଦିଗରେ ଲେଖନୀ ଚାଳନା କରି ନ ଥିଲେ । କଣାମାମୁଁର ରଚନା ସାହିତ୍ୟ କ୍ଷେତ୍ରରେ ଅନ୍ୟ ଏକ ହାସ୍ୟରସର ବୀଜବପନ କଲା ।

## କାନ୍ତକବିଙ୍କ ଅନ୍ୟାନ୍ୟ ରଚନା—

ରସସାହିତ୍ୟ, ଲଳିକା, ନାଟ୍ୟସାହିତ୍ୟ, ପ୍ରବନ୍ଧ ସାହିତ୍ୟ, କଲ୍ଲୋଳ, ବିବିଧ କବିତା, ବାଳସାହିତ୍ୟ, ସାହିତ୍ୟ ସୁଧାକର, କୁମାରୀ, ଧର୍ମ ସଙ୍ଗୀତ, ବାଳକର ବୋଲି; କଥାସାହିତ୍ୟ, ସ୍ୱରସାହିତ୍ୟ, ଓ ଜୀବନ ସଂଗୀତ ।

## କଣାମାମୁଁର ପ୍ରେରଣା—

କାନ୍ତକବିଙ୍କ 'କଣାମାମୁଁ' ସୃଷ୍ଟିର ଗର୍ଭବେଦନା ନିମ୍ନଲିଖିତ ପଂକ୍ତିରୁ ଜଣାଯାଏ । ଗ୍ରନ୍ଥାବଳୀର 'କାନ୍ତକବି' ଶୀର୍ଷକ ପ୍ରକାଶକଙ୍କ ଜୀବନୀ ସଂଗ୍ରହରୁ ଏହା ଅନ୍ୱେଷ୍ୟ ।

"କାନ୍ତକବି ପରିବାର ସହିତ ଘନିଷ୍ଠ ସଂପର୍କ ରଖିଥିବା ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ହକିମ୍ ମହମ୍ମଦ ଫାରୁକ୍ । ଭଦ୍ରକର କୋଟିଏ ପ୍ରସିଦ୍ଧ ମୁସଲମାନ ଜମିଦାର ବଂଶରେ ତାଙ୍କ ଜନ୍ମ । କାନ୍ତକବିଙ୍କର ସୂର୍ଯ୍ୟମୈତ୍ରୀ ସଂପର୍କରେ ସେ ମାମୁଁ । ଏହି ସର୍ବଦା ପ୍ରସନ୍ନମୁଖ ବ୍ୟକ୍ତିଙ୍କର ନିଷ୍କପଟ ସ୍ନେହ ତାଙ୍କୁ ସମ୍ଭବତଃ କଣାମାମୁ ଲେଖିବାରେ ପ୍ରବୃତ୍ତି ଦେଇଥିଲା ।"

× × × ×

ଭଦ୍ରକରେ ଥିଲାବେଳେ ସେ ତାଙ୍କର ପ୍ରସିଦ୍ଧ ଉପନ୍ୟାସ କଣାମାମୁଁର ମୂଳଦୁଆ ପକାଇଥିଲେ । ନାନା ଜଂଜାଳ ଓ ପ୍ରତିକୂଳ ପରିସ୍ଥିତି, ରଚନାର ଅଗ୍ରଗତିରେ ଘୋର ପ୍ରତିବନ୍ଧକ ସୃଷ୍ଟି କରିଥିଲା ଓ ରଚନା ପୁରାପୁରି ବନ୍ଦ ହୋଇ ଯାଇଥିଲା । କଟକର ପରିବେଶ ଅନୁକୂଳ ପରିସ୍ଥିତି ସୃଷ୍ଟି କଲା । ତାଙ୍କପ୍ରତି ଅନୁରକ୍ତ କେତେକ ସାହିତ୍ୟିକଙ୍କର ଏକାନ୍ତ ଅନୁରୋଧ ଏଡାଇ ନପାରି ସେ ପୁନର୍ବାର 'କଣାମାମୁଁ' ରଚନାରେ ଲାଗି-ପଡ଼ିଲେ । କଣାମାମୁଁର ମୁକ୍ତି ମିଳି ଦେଖିବାକୁ ବହୁ ସାହିତ୍ୟିକ ଅତ୍ୟନ୍ତ ବ୍ୟଗ୍ରତା ପ୍ରକାଶ କରିବାରୁ କାନ୍ତକବି ତରତର ହୋଇ ରଚନାଟି ଶେଷ କରିଦେଲେ । କଣାମାମୁଁଙ୍କ ଅନ୍ତର୍ଦ୍ଧାନରେ ପୁସ୍ତକଟି ଶେଷ ହୋଇଛି । ଏହା ସଂପୂର୍ଣ୍ଣ ହୋଇ ପାରିନାହିଁ । ସ୍ୱୟଂ କାନ୍ତକବି କହିଥିଲେ ଯେ ଆଉ ଟିକିଏ ବର୍ଦ୍ଧିତ କରି ନିମ୍ନଲିଖିତ ବିଷୟବସ୍ତୁ ସଂଯୋଗ କଲେ ଅଧିକ ଉପାଦେୟ ହେବ ଯଥା :- କଣାମାମୁଙ୍କ ଅନ୍ତର୍ଦ୍ଧାନପରେ ବହୁବର୍ଷ ବିତି ଯାଇଥିବ । ଉପନ୍ୟାସର ନାୟକ ନାୟିକାମାନେ ବୟସ୍କ ହୋଇ ସାରିଥିବେ । ହଠାତ୍ ଦିନେ କଣାମାମୁଁଙ୍କ ଆବିର୍ଭାବ ହେବ । ସେତେବେଳକୁ ଭାରତବର୍ଷର ସ୍ୱାଧୀନତାର ପ୍ରାକ୍‌କାଳ ହୋଇଥିବ । ସମସ୍ତେ ତାଙ୍କୁ ବେଢ଼ି ଯାଇ ସେ କେଉଁଠି ଥିଲେ ଓ କଣ କରୁଥିଲେ ବୋଲି ପଚାରିବେ । କଣାମାମୁଁ ସମସ୍ତଙ୍କୁ ନିଜର କାର୍ଯ୍ୟକଳାପ ସ୍ୱରୂପ ସ୍ୱାଧୀନତା ସଂଗ୍ରାମ ତଥା ସୁଭାଷ ବୋଷଙ୍କ ଭାରତୀୟ ଜାତୀୟ ସେନାଙ୍କର ଅଭିଯାନର

ଏକ ଚିହ୍ନ ଦେବେ । ଭାରତୀୟ ସ୍ୱାଧୀନତା ଲୋପପାଇ ବ୍ରିଟିଶ ଶାସନର ଚରମ ପ୍ରତିଷ୍ଠାରେହିଁ ଫକୀରମୋହନଙ୍କ ଲେଖନୀ ବନ୍ଦ ହୋଇଛି । ଏଇଠାରୁ ସ୍ୱାଧୀନତା ସଂଗ୍ରାମ ଓ ଭାରତରେ ସ୍ୱାଧୀନତା ପ୍ରାପ୍ତିର ଚିହ୍ନ ଦେଇ କାଂନ୍ତ କବି ଫକୀର ମୋହନଙ୍କ ଯୁଗସଂଗେ ଅତ୍ୟାଧୁନିକ ଯୁଗର ଏକ ସଂଯୋଗ ସୂତ୍ର ସ୍ଥାପନାର ପରିକଳ୍ପନା କରିଥିଲେ । ଅନୁକୂଳ ବାତାବରଣ ପାଇଥିଲେ ସେ ଏଇ ବିଷୟବସ୍ତୁକୁ ମୂଳଗ୍ରନ୍ଥରେ ଯୋଡ଼ି କରିଥାନ୍ତେ । ପାଂଡୁଲିପିର ଗୋଟିଏ ପୃଷ୍ଠା ମଧ୍ୟ ଉଗର ପ୍ରେସର ତତ୍କାଳୀନ କେତେକ ଅସାବଧାନ କର୍ମଚାରୀଙ୍କ ଯୋଗୁଁ ନଷ୍ଟ ହୋଇ ଯାଇଥିଲା । ଅବଶ୍ୟ ଏହି ଶେଷ ପୃଷ୍ଠାରେ ଖୁବ୍ ଅଳ୍ପ ବିଷୟବସ୍ତୁ ଥିଲା ।”

## କଣାମାମୁଁର କାହାଣୀ--

କଣାମାମୁଁ ହେଉଛନ୍ତି ଗାଁ ଯାକର ମାମୁଁ । ମାମୁଁଙ୍କପାଇଁ ଗାଁରେ ସମସ୍ତ ଦ୍ୱାର ଅବାରିତ । ଅକୁହା କାହାରି ଘରେ ଖାଇବାପାଇଁ ବସିଯାଆନ୍ତି, ଅପୁଚ୍ଛା କାହାର ଲୁଗା ପିନ୍ଧିପକାନ୍ତି । ଗାଁର ସମସ୍ତେ ମାମୁଁଙ୍କର ଏପରି ବ୍ୟବହାରରେ ଅଭ୍ୟସ୍ତ ଯେ ଏଇଥିପାଇଁ କେହି କିଛି ମନେକରନ୍ତି ନାହିଁ ।

ସମସ୍ତିଙ୍କ ପାଖରେ ସିଏ ଜହ୍ନମାମୁଁ ଓ ପିଲାଙ୍କପାଇଁ ସେ ଯମ । ଛୋଟପିଲାମାନେ ତାଙ୍କ ନାଁ ଶୁଣିଲେ, ଅଜଣା କୋଳୁଆଭୟ ଭିତରେ ପଶିଯାଏ । ମାତ୍ର, ସେ ପିଲାଠାରେ ପିଲା, ବୁଢ଼ାଠାରେ ବୁଢା । ଯୁବକ-ମାନଙ୍କର ସେ ହେଉଛନ୍ତି ସାଥି ।

ମାମୁଁଙ୍କ ବୟସ ଦୃଷ୍ଟିରୁ- ସେ ହେଉଛନ୍ତି ଚିରଯୁବକ କାରଣ ବାର୍ଦ୍ଧକ୍ୟର କୌଣସି ଚିହ୍ନ ତାଙ୍କ ମୁହଁରେ ପରିଦୃଷ୍ଟ ହୁଏ ନାହିଁ । ମୁହଁରେ ବସନ୍ତ ଦାଗ, ବାଲୁ ବାଲୁ ମୁଛଦାଢ଼ି, ହେଲେ ଅଣ୍ଟାଠାରୁ ତଳକୁ ବେବାଗିଆ । ଗାଁର ସନା ନାୟକ ଅନୁସାରେ ମାମୁଙ୍କ ଲଗ୍ନରେ

ଶୁନ୍ଧଥିବାରୁ ସେ କଣା ହୋଇଛନ୍ତି । ଏଣୁ ଆଖିର ଆକୃତିରୁ ତାଙ୍କ ନାଁ କଣାମାମୁଁ ହୋଇଯାଇଛି ।

ମାମୁଁଙ୍କ ଆଖି କଣା ହେବାର ଅନେକ ଇତିହାସ ଅଛି । ଗୋଟିଏ ହେଉଛି ବଡ଼ର ଅଙ୍କରେ ବଢ଼ିବେଳେ ସମସ୍ତେ ଭସିଯାଇଥିବା ସତ୍ତ୍ୱେ ମାମୁଁ ବଞ୍ଚିଗଲେ ଓ ଡ଼ଙ୍ଗାରେ ବସିଥିଲେ । ଡ଼ଙ୍ଗାରେ ନଅାଁ ଲାଗି ଖଣ୍ଡିଏ ଝିଲ ଛୁଟିକି ଯାଇ ଆଖିରେ ପଡ଼ିବାରୁ ଆଖି କଣା ହୋଇଯାଇଥିଲା । ଅନ୍ୟଟି ହେଉଛି- ଗାଁର ଗୋଟିଏ ବିବାହ ବେଳେ ଜଳମି ଯାଇଥିବା ଗଛବାଣଟିଏ ଫୁଟାଇବାକୁ ଯିବାପାଇଁ ଗୋଟିଏ ବାଣ କିଣିବାକୁ ଯାଇ ମାମୁଁଙ୍କ ଆଖି ଫୁଟିଗଲା ।

ମାମୁଁଙ୍କ ବିବାହ ପ୍ରସଂଗ ଅତ୍ୟନ୍ତ ମର୍ମନ୍ତୁଦ । ଈଶାଣପୁରର ଶ୍ରେଷ୍ଠୀ କନ୍ୟାକୁ ବିବାହ ହେବାପାଇଁ ବରବେଶ ସାଜି ମାମୁଁ ଯେତେବେଳେ ଶାଶୁଙ୍କ ଦୁଆରରେ ( ଯେହେତୁ ଶ୍ୱଶୁର ଆଗରୁ ସେ ପୁରକୁ ଯାଇ-ଯାଇଥିଲେ ) ପହଞ୍ଚିଲେ, ମାମୁଁଙ୍କ ଶାଶୁ ମାମୁଁଙ୍କ ଶୂନ୍ଧନେତ୍ର ବିଷୟ ଶୁଣି ନେଳିଙ୍କ ରୂପ ସ୍ୱଚକ୍ଷରେ ଦେଖିବାପାଇଁ ଜିଦ୍‌କଲେ । ଏ ଆଶୁ ବିପଦ ଶୁଣି ବରଯାତ୍ରୀମାନେ ଯେ ଯେଉଁଆଡ଼େ ପଳାଇଲେ । ଶାଶୁ ଯେତେବେଳେ ଗ୍ରାଅଁଣି ଧରି ପହଞ୍ଚିଲେ, ମାମୁଁ ନିଜର ଜୀବନ ରକ୍ଷା ନିମିତ୍ତ କାହାକୁ ବିଧା, କାହାକୁ ଗୋଇଠା ମାରି ସେଠାରୁ ସିଧା ପଳେଇଲେ । ତାପରେ ତିନଦିନ ଯାଏଁ ମାମୁଁ ଗାଁକୁ ଫେରିନାହାନ୍ତି ।

## ମାମୁଁଙ୍କର ବଂଶ ଇତିହାସ--

ମାମୁଁ ହେଉଛନ୍ତି (ଔପନ୍ୟାସିକଙ୍କ) ଗାଁର ବାସୁ ପଟ୍ଟନାୟକଙ୍କ ଭଉଣୀଙ୍କ ମାମୁଁଙ୍କ ଶଳା । ଅର୍ଥାତ୍, ବାସୁଙ୍କର ମାମୁଁ ହେଉଛନ୍ତି ଆମ-

ମାନଙ୍କର ମାମୁଁ । ପଟ୍ଟନାୟକଙ୍କ ବଂଶ ନିପାତ ହେବାରୁ ଆମ ମାମୁଁ ତାଙ୍କ ଭଣଜା ( ପଟ୍ଟନାୟକ )ଙ୍କ ଘରକୁ ଆସିଲେ । ମାମୁଁ ସେଠାରେ କେତେ ଦିନ ଯୋଡାମୋଡା ପିନ୍ଧି ସ୍କୁଲକୁ ଗଲେ । ବାପୁଙ୍କର କାଳ ହେବାରୁ ମାମୁଁଙ୍କର ପଢ଼ା ବନ୍ଦ ହୋଇଗଲା । ଘରର ମୁରବୀ ପଟ୍ଟନାୟକଙ୍କ ଅନ୍ତେ ଘରଟି ଧ୍ୱଂସହେବାରୁ ମାମୁଁ ମୁକ୍ତ ଆକାଶର ବିହଙ୍ଗପରି ଘୁରି ବୁଲିଲେ । ଏହାହିଁ ହେଲା ମାମୁଁଙ୍କ ବଂଶର ଇତିହାସ । କିନ୍ତୁ, ଲେଖକ କେବଳ ମାମୁଙ୍କର ଅସଲ ପରିଚୟ ଦେଇପାରି ନାହାନ୍ତି କାରଣ ଅନ୍ୟମାନଙ୍କ ପରି ସେ ମାମୁଁଙ୍କୁ ପିଲାବେଳୁ ଦେଖି ଆସିଛନ୍ତି । ମାମୁଁ ମଧ୍ୟ ନିଜେ ନିଜର ( ଜମିଦାରୀ ବିଷୟ ବ୍ୟତୀତ ) କିଛି କହି ନାହାନ୍ତି ।

ପିଲାବେଳେ ମାମୁଁଙ୍କୁ କିପରି ଗାଁର ପିଲାମାନେ ଡ଼ରୁଥିଲେ ଲେଖକ ଦୁଇଟି ଘଟଣାର ଅବତାରଣା କରିଛନ୍ତି । ଦିନେ ଲେଖକ ଓ କୃଷ୍ଣ ଭାଇ ଶତ୍ରୁଘ୍ନ ମା ବାଡିରେ କୋଳି ଖାଉଥାନ୍ତି । ଶତ୍ରୁଘ୍ନ ମା ଏହା ଜାଣି ପାରିଲା । ବୁଢ଼ୀ ଆସି ସେମାନଙ୍କୁ ଗୁଡାଏ ଗାଳି ଗୁଲଜ କଲେ ସୁଦ୍ଧା ସେମାନେ ଶୁଣି ନ ଶୁଣିଲାପରି କୋଳି ଖାଉଥାନ୍ତି । ଠିକ୍ ଏ ସମୟରେ ମାମୁଁ ପହଞ୍ଚି ଯାଇଛନ୍ତି । ମାମୁଁଙ୍କୁ ଦେଖି ଭୟରେ ମାମୁଁଙ୍କ ଉପରେ କୃଷ୍ଣଭାଇ ଏକ କରି ଦେଇଛି । ମାମୁଁ ଉଭୟଙ୍କୁ ଶାସ୍ତି ଦେଇଛନ୍ତି ଶତ୍ରୁଘ୍ନ'ମା ଆଉ ନ ମାରିବାକୁ ମାମୁଁଙ୍କୁ ଅନୁରୋଧ କରିଛି । ଅନ୍ୟଦିନ ମାମୁଁ ଗାଁର ବିଶୃଙ୍ଖଳ କିଶୋର ମାନଙ୍କୁ ପୋଖରୀରେ ( ପାଣି ଗୋଳିଆ କରୁଥିବା ବେଳେ ) ଉଚିତ ଦଣ୍ଡ ଦେଇଛନ୍ତି ।

କ୍ରମେ, କାଳର ପରିବର୍ତ୍ତନରେ କିଶୋର ମାନେ ଯୁବକ ହୋଇ ଛନ୍ତି ଓ ମାମୁଁଙ୍କର ବ୍ୟବହାର ଗାଁର ନବ ଯୁବକମାନଙ୍କ ପ୍ରତି ଭିନ୍ନ ହୋଇଯାଇଛି । ମାମୁଁ ଯୁବକମାନଙ୍କ ବନ୍ଧୁ ହୋଇ ଯାଇଛନ୍ତି, କାରଣ ଏହି

ଘଟଣାରୁ ତାହା ସ୍ପଷ୍ଟ ପ୍ରତୀୟମାନ ହେଉଛି ।

ଲେଟକ ଓ ତାଙ୍କ ଅନ୍ୟ ବନ୍ଧୁମାନେ ମିଶି ଦିନେ ଫିଷ୍ଟ କରିଛନ୍ତି ଓ ହାଡ଼ିଆମାର ଛେଳି ଗ୍ରେବାଇ ନେଇଛନ୍ତି ମାତ୍ର ମାମୁଁ ଶେଷରେ (କାହାକୁ କିଛି ଦଣ୍ଡ ନ ଦେଇ) ହାଡ଼ିଆ ମାକୁ ତା'ର ଛେଳିଟି ଫେରେଇ ଦେଇଛନ୍ତି ।

ମାମୁଁଙ୍କ ସହିତ ଗାଁର ଯୁବକମାନଙ୍କ ଦୋସ୍ତି କ୍ରମେ ଗଭୀରତର ହୋଇ ଉଠିଲା । ଦିନେ ମାମୁଁ ଯୁବକମାନଙ୍କୁ ସଂଗୀତ ଆଖଡ଼ାଟିଏ ଆରମ୍ଭ କରିବାପାଇଁ ଉତ୍ସାହ ଦେଲେ । ଆଖଡ଼ାରେ ସମସ୍ତ ଯୁବକ ବିଭିନ୍ନ ଗୀତବାଦ୍ୟ ( ଯେ ଯାହା ଜାଣିଥିଲେ ) ଆରମ୍ଭ କଲେ । ଏହି ଆଖଡ଼ାରୁ ଯୁବକଙ୍କ ମନ ବିଭିନ୍ନ ଦିଗକୁ ଗତିକଲା । କେହି କୀର୍ତ୍ତନ୍ୟ ,କେହି ଯାତ୍ରା ମାଧ୍ୟମରେ ସଂଗୀତ ଆରମ୍ଭ କରିବାକୁ ମନସ୍ଥ କଲେ । କିନ୍ତୁ ଏ ସବୁ ମାଧ୍ୟମ ଗ୍ରହଣ ନ କରି କ୍ଲାସିକ (ଖାଣ୍ଟି) ସଂଗୀତ ଶିକ୍ଷା କରିବାକୁ ପ୍ରବର୍ତ୍ତାଇଲେ ।

ସଂଗୀତର ଆସର ଠିକ୍ ଜମି ଆସିଲା ବେଳକୁ ଗାଁକୁ ସର୍କସ ଦଳ ଆସିଛନ୍ତି । ମାମୁଁ ଆଖଡ଼ା ଆଡ଼କୁ ଚିନ୍ତା ନ କରି ସର୍କସବାଲାଙ୍କୁ ଅଯାଚିତ ସାହାଯ୍ୟ କରିଛନ୍ତି । ସର୍କସଦଳ ଚାଲି ଯିବାପରେ ମାମୁଁ ଟିକିଏ ଫୁରୁସତ ପାଇଛନ୍ତି । ପିଲାଏଁ ଲାଗିଲେ, ସେମାନେ ସର୍କସ କରିବେ । ମାମୁଁ ତାଙ୍କୁ ମନାକଲେ କାରଣ ସର୍କସ କରିବାଟା ବଡ଼ ମୁସ୍କିଲ ବ୍ୟାପାର । ବାଘ, ଭାଲୁ ସେଥିରେ ପୋଷିବାକୁ ପଡ଼ିବ, ଯେଉଁଥିପାଇଁ ବାଘବାରଣୀ ମନ୍ତ୍ର ଶିଖିବା ନିହାତି ଦରକାର । ମାମୁଁଙ୍କୁ ଥିଏଟରରେ କରିବା କଥା ବିନୁ ( ଉପନ୍ୟାସର ଏକ ଚରିତ୍ର ) କହିବାରୁ ମାମୁଁ ତାଙ୍କୁ ମାଇଚଆ କାମ ବୋଲି କହି ଲକ୍ଷ୍ନୌ ବାଲା ଉସ୍ତାଦ ଓ ଗୋଆଲିଅର ଉସ୍ତାଦଙ୍କ ଭିତରେ

ଚାଲିଥିବା ଏକ ଭୀଷଣ ପ୍ରତିଯୋଗିତା ବିଷୟ କହିଛନ୍ତି । ପ୍ରତିଯୋଗିତାରେ ଗୋଟିଏ ଉସ୍ତାଦ ତାର ଗୀତର ଶକ୍ତିଦ୍ୱାରା ଗଛରୁ ଆମ୍ବ ଝଡ଼େଇଥିଲା । ତାପରେ ଗୁଆଲିଅର ଉସ୍ତାଦ ତାର ଗୀତର ଶକ୍ତିଦ୍ୱାରା ଜ୍ୟେଷ୍ଠମାସରେ ବସନ୍ତରାଗ ଗାଇ ବସନ୍ତ ଋତୁ ଆଣି ପାରିଥିଲା । ଏଇଟା ହେଉଛି ମାମୁଁଙ୍କ ଆଖି ଦେଖିବା କଥା ।

**ମାମୁଁ** ପୁନର୍ବାର ଅନ୍ୟ ଏକ ଘଟଣାର ଆରମ୍ଭ କରିଛନ୍ତି ସଂଗୀତର ଶକ୍ତି ବୁଝେଇବାପାଇଁ । ଏଇଟା ହେଉଛି ମାମୁଁ ଆଉ ଦେଶରେ ଥିବା ବେଳର କଥା । ଜଣେ କର୍ଣ୍ଣାଟ୍ ଉସ୍ତାଦ ମାମୁଁଙ୍କ ବାପାଙ୍କ ଘନିଷ୍ଠ ବନ୍ଧୁ ଥିଲେ । ମାମୁଁଙ୍କ ବାପାଙ୍କ ଶିକାର ପାଇଁ ଆଉଜଣେ ଉସ୍ତାଦ (କାଶୀର) ମଧ୍ୟ ଯାଇଥାନ୍ତି । ଶିକାର ବେଳେ ବଇଁଶୀ ବଜାଇଲେ କାଶୀ ଉସ୍ତାଦ । ବଇଁଶୀର ସ୍ୱରରେ ବଣର ବାଘଭାଲୁ ଧାଇଁ ଆସିଲେ ମାତ୍ର କର୍ଣ୍ଣାଟୀ ଉସ୍ତାଦର ବୀଣା ଝଙ୍କାରରେ ସମସ୍ତେ ବଣ ଭିତରକୁ ପଳେଇଗଲେ । ଦିନେ ଦକ୍ଷିଣୀ ଉସ୍ତାଦ ରାଗିଯାଇ ଦୀପକ ରାଗ ବଜେଇବାରୁ ଗୁହାଆଡ଼େ ନିଆଁ ଲାଗିଯାଇଛି । ମାମୁଁଘରର ହାତୀମାନେ ମରିଯିବା ଉପରେ । କାଶୀ ସନ୍ୟାସୀ ମେଘମଲ୍ଲାର ରାଗ ବଜାଇ ପାଣିବର୍ଷା କରିଛନ୍ତି । ଯାହା ଜଳୁଥିଲା, ସବୁ ଲିଭିଯାଇଛି । ତା'ପରେ ଦକ୍ଷିଣୀ ଉସ୍ତାଦ୍ ରାଗ ନାଗେଶ୍ୱରୀ କାନଡ଼ା ବଜେଇଛି । ସାପମାନେ ସେଇ ସ୍ୱରର ଅନୁଧାବନ କରି ବାବାଜୀଙ୍କୁ ଦଂଶି ଦେଇଛନ୍ତି । ବାବାଜୀ ମରିଯାଇଛି ମାମୁଁଙ୍କ ଜେଜେ ବାପା ସେହିଦିନଠୁ ସଂଗୀତ ପ୍ରତି ବୀତସ୍ପୃହ ହୋଇପଡ଼ିଲେ । ଯାପରେ ମାମୁଁଙ୍କ ବାପା ସେଇଠୁ ପହିଲମାନୀ କଲେ, ବାଘ ପୋଷିଲେ ଖେଳେଇଲେ । ବାଘ ଖେଳ ବେଳେ ଥରେ କିଏ ଗୁଳି ଦେବାରୁ ବାଘ ମାମୁଁଙ୍କ ବାପାଙ୍କ ହାତରୁ ପୁଳାଏ ନେଇଗଲା । ବାଘ ଖେଳେଇବା ବନ୍ଦ ହୋଇଗଲା ।

ସର୍କସର ପଶୁ ଖେଳର ଭୟାବହ ଚରିତ୍ର ହୃଦୟଙ୍ଗମ କରି ସାରିବାପରେ ସମସ୍ତେ ଆକୃଷ୍ଟ ହେଲେ କସରତ୍ ପ୍ରତି । ମାମୁଁ କାଗଜ ପେନ୍ସିଲ ମଗାଇ କିଏ କଣ କସରତ୍ କରିବ ସବୁ ନୋଟ କରେଇଲେ । ପିଲାଏ ଏଣିକି କସରତ୍ ଆଖଡ଼ାରେ ଯୋଗ ଦେଲେ । ଅନ୍ୟସାଇରେ ଟୋକାମାନେ ମଧ୍ୟ ଆସି ଏଥିରେ ଯୋଗ ଦେଲେ । ସର୍ବସମ୍ମତି କ୍ରମେ ଏଇ କସରତ୍ ପାଇଁ ଫିଜ୍ ଠିକ୍ କରାଗଲା ମାସକୁ ଚାରିଅଣା । କସରତ୍ ବାଲା ମାନଙ୍କୁ ଦୁଇଦଳରେ ବିଭକ୍ତ କରାଗଲା । ଯେଉଁମାନେ ସକାଳେ ଓ ସଞ୍ଜରେ କସରତ୍ କଲେ ସେମାନେ ହେଲେ ଆଠପହରିଆ ଓ ଯେଉଁମାନେ ଫୁରସତ୍ ମୁତାବକ ଆସି କସରତ କଲେ ସେମାନେ ହେଲେ ଉଠାଗଣ୍ଡିଆ ।

ଆଖଡ଼ାଘରେ ବନାକାମରେ ଦୁ'ପହରରେ ବସିବାରୁ ସମୟଟାକୁ କଟେଇ ଦେବାପାଇଁ ସମସ୍ତଙ୍କର ତାସ ଖେଳିବାର ଗୋଟିଏ ଅଭ୍ୟାସ ହେଲା । ସେଇ ଅଭ୍ୟାସ କ୍ରମେ ମନ୍ଦଦିଗକୁ ଗତିଗଲା । ଦିନେ ରାତିରେ ପଧାନ ବୁଢ଼ାର ପୋଖରୀରୁ ମାଛ ଚୋରିକରିବାର ଉପାୟ ଉଦ୍ଭାବନ କରନ୍ତି । **କୃଷ୍ଣନାଥ** ସମସ୍ତଙ୍କୁ ନେଇ ରାତିରେ ମାଛ ଧରିବାପାଇଁ ଯାଇଥିବା ବେଳେ ପଧାନବୁଢ଼ା ଓ ଅନ୍ୟମାନେ ଚୋର ଧରିବାକୁ ଆସି ପହଞ୍ଚିଛନ୍ତି । ମାମୁଁ ପୋଖରୀ କୂଳରେ ଗଛଉପରୁ ପାଣିକୁ ଡେଇଁ ଭୂତଭୟ ଦେଖାଇ ଏଇ ବିପଥଗାମୀ ଯୁବକମାନଙ୍କୁ ଆଶୁ ବିପଦରୁ ବଞ୍ଚାଇଛନ୍ତି ।

ଦିନେ ଆଖଡ଼ା ଘରକୁ ମାମୁଁଙ୍କ ସଙ୍ଗେ ବୈରାମ ଖାଁ ଓରଫ୍ ଖଲିଫା ସାହେବ ଆସିଛନ୍ତି । ବୁଢ଼ାଙ୍କୁ ସମସ୍ତେ ସଲାମ କରିଛନ୍ତି ମାମୁଁଙ୍କ ଆଦେଶରେ । ବୁଢ଼ାର ଅନେକ କପୋଳକଳ୍ପିତ କଥାରେ ସମସ୍ତେ ମଜା-ପାଇଛନ୍ତି ମହମ୍ମଦ ଓ ହିନ୍ଦୁ ଧର୍ମ ମଧ୍ୟରେ କିମ୍ଭୂତ କିମାକାର ତୁଳନା କରି ସାମଂଜସ୍ୟ ଥିବା କଥା ବୁଝାଇଛନ୍ତି ।

ଏ ଯୁବକ ମାନଙ୍କର ମାନ୍ଦଗ୍ରେଣ ବିଷୟ ଗାଁରେ ସ୍ପଷ୍ଟ ହୋଇଗଲା । ଅନେକ କୁତ୍ସା ରଚନା ଗ୍ଲେଜିଲା ମାତ୍ର ମାମୁଁ ସମସ୍ତଙ୍କୁ ଅଭୟ ଦେଖାଇ ସ୍ୱକର୍ତ୍ତବ୍ୟ ପଥରେ ଅଗ୍ରସର ହେବାକୁ ଉପଦେଶ ଦେଲେ ।

ବିଧିର ବିଧାନ ଅନ୍ୟପ୍ରକାର । ଯୁବକମାନଙ୍କ ଏ ସବୁ ଉତ୍ସାହ ଗୋଟିଏ ଘଟଣାରୁ ଭିନ୍ନ ଆକାର ଧାରଣ କଲା । ଦିନେ ରାତ୍ରରେ ଗାଁର ପଧାନ ଘରକୁ ଚୋରମାନେ ପଶି ସବୁ ନେଇଗଲେ । ଯେତେବେଳେ ଅଧ ରାତ୍ରରେ ପଧାନଘରୁ ପାଟି ଶୁଭିଲା ଗାଁର ସମସ୍ତେ ସେଠାରେ ରୁଣ୍ଡ ହୋଇଗଲେ । ଖୋଜାଖୋଜ ହେବାରୁ ଦେଖାଗଲା ପଧାନ ବୁଢ଼ାର ଅବିବାହିତା ନାତୁଣୀ ଅନୁକୁ ଚୋରମାନେ ଧରି ପକେଇଛନ୍ତି । ମାମୁଁ ଆଖଡ଼ା ଘରର ପିଲଙ୍କୁ ଡକେଇ ଖୋଜାଇ ପଠେଇଛନ୍ତି ଓ କଅଁଳ ବୁଦାଇ ଭିତରେ ଅନ୍ଧାର ଜାଗା ଟିଏ ପାଇଛନ୍ତି । ସେଠାରେ ଅଚେତା ଅନୁ ମୁହଁରେ ଲୁଗାବନ୍ଧା ଗେଂଜା ହୋଇ ଅଚେତା ହୋଇ ପଡ଼ିଥିବା ଦେଖି ତାକୁ ବୋହି ଆଣିଛନ୍ତି ଓ ଚେତା କରେଇଛନ୍ତି ।

ମାମୁଁଙ୍କ ଆଦେଶରେ ଉକ୍ତ କଅଁଳ ବୁଦାଇର ଗୋଟିଏ ପଶିକି ଗଳିଯିବା ମାର୍ଗିକ ଏକ ସବୁ ବସ୍ତୁ ରୁ ଖଣ୍ଡିଏ ଗାମୁଛା, ବାଡ଼ିଏ ଦଉଡ଼ି, ଦୁ'ଖଣ୍ଡ ଛୁରୀ, ଗୋଟିଏ ସାବଳ ଆଣିଛନ୍ତି । ସେଠାରେ ପଡ଼ିଥିବା ଗୋଟିଏ ପିସ୍ତଲକୁ ଟୋକାଟିଏ ମୂଷାବୋଲି ଭାବି ନେଇ ଆସିଛି । ମାମୁଁ ସେ ପିସ୍ତଲଟିକୁ ନିଜେ ରଖିଛନ୍ତି ଓ ଅନୁକୁ ଘରକୁ ନେଇ ଆଣିଛନ୍ତି ।

ଏମାନେ ଗାଁରେ ପହଞ୍ଚିଲା ବେଳକୁ ମୁନସିବାବୁ ତାଙ୍କ ମିସଲ ( ଅଦାଲତ ) ଜମେଇ ଦେଇ ସାରିଥିଲେ । ସଭିଏଁ ଅଭିକୁ ( ଲେଖକ ) ଡାକ ଝିଅ ମିଳିଥିବା କଥା ପଚାରିଲେ । ତାପରେ ମାମୁଁଙ୍କୁ ଡକାହୋଇ

ଅଣାଗଲେ । ମୁନ୍‌ସି ମାମୁଁଙ୍କଠାରୁ ଗାଁର ଆଖଡ଼ାଘର ବିଷୟରେ ପଚାରିଲେ ଓ ମାମୁଁଙ୍କୁ ଅଯଥା କୁଭାଷାରେ ଗାଳି କଲେ । ମାମୁଁଙ୍କୁ ଚୋରଙ୍କ ସର୍ଦ୍ଦାର ଭାବେ କୌଣସି ପ୍ରମାଣ ସଂଗ୍ରହ ନ କରି ଗୁଣ୍ଡାଏ ବକି ଗଲେ । ମାମୁଁ ନିଜର ନିର୍ଦ୍ଦୋଷର ପ୍ରମାଣ ଦେଲେ ସୁଦ୍ଧା ମୁନ୍‌ସି ବିଶ୍ୱାସ କରିନ । ହୁତା ଅନୁକୁଳ ମାମୁଁ ପଧାନବୃତ୍ତାର ଜମା ଦେଇଥିବାରୁ ସେ ମାମୁଁ ଉପରେ ବିରକ୍ତ ହୋଇଛି । ତାଙ୍କୁ ଅକଥ୍ୟ କଟୂକ୍ତି ପ୍ରୟୋଗ କରୁଛି । ମାମୁଁ ଏ ଅପମାନରେ ଅସହ୍ୟ ହୋଇଉଠିଛନ୍ତି । ମୁନ୍‌ସିକୁ ମାରିବାପାଇଁ ମାମୁଁ ଟାଣି ହୋଇଛନ୍ତି । କିନ୍ତୁ ତାଙ୍କୁ ଅନ୍ୟମାନେ ପଛରୁ ଟାଣି ଧରିଛନ୍ତି । ଏ ଟଣା ଓଟରା ଭିତରେ ଡ଼କେଇଟଙ୍କ ଠାରୁ ପାଇଥିବା ପିସ୍ତଲଟି ମାମୁଁଙ୍କ ଅଣ୍ଟାରୁ ଖସିପଡ଼ିଛି । ମୁନ୍‌ସି ତାଙ୍କୁ ଗାଳିକରି ସେଠାରୁ ପିସ୍ତଲଟି ନେଇ ଚାଲିଯାଇଛି । ଏ ସମ୍ପର୍କରେ ମୁନ୍‌ସି ଏକ ଫାଙ୍କା ରିପୋର୍ଟ ଦେଇ ପିସ୍ତଲଟିକୁ ହାତପଇଠ କରି ନେଇଛି ।

ଗାଁରେ ଚୋରଭୟ ଖେଳିଯାଇଛି । ମାମୁଁଙ୍କ ଆଦେଶରେ ଆଖଡ଼ାର ପିଲା ସମସ୍ତେ ଗାଁସାରା ପହରା ଦେଇ ଲୋକଙ୍କୁ ନିର୍ଭୟରେ ରଖିଛନ୍ତି । ଦିନେ ମୁନ୍‌ସୀ ଆଖଡ଼ାଘର ଖାନ୍‌ତଲାସ କରି ଆସିଛି । ମାତ୍ର ଘରେ କିଛି ପାଇନି । ମାମୁଁଙ୍କ କାମିଜ ପକେଟରୁ ଚୋରଙ୍କଠାରୁ ପାଇଥିବା ଟର୍ଚ୍ଚ-ଲାଇଟ୍‌ଟା ପାଇଛି । ମାମୁଁ ଏ ସମ୍ପର୍କରେ (ଚୋରଙ୍କଠାରୁ ମିଳିଥିବା କଥା) ଯେତେ କହିଲେ ସୁଦ୍ଧା ମୁନ୍‌ସୀ ଆଦୌ ବିଶ୍ୱାସ କରିନ । ଶେଷରେ ଅନୁ ଉପରେ ଏମାନେ ( ମାମୁଁ ଓ ଆଖଡ଼ାପିଲା ) ଅନ୍ୟାୟ କରିଥିବେ ବୋଲି ମିଥ୍ୟା ଅଭିଯୋଗ ଆଣିଛି ଓ ମାମୁଁଙ୍କ କାଣିଚ ତଥା ଶଳାଙ୍କ ଉପରେ ଅପମାନସୂଚକ ବାକ୍ୟବାଣ ପ୍ରହାର କରିଛି । ମାମୁଁ ଚିହିଁକିଉଠି ଜୋରରେ ମୁନ୍‌ସୀ ଉପରେ ତିନିଟା ବିଧା ପକେଇଛନ୍ତି । ମୁନ୍‌ସୀ ଭୂଇଁରେ ପଡ଼ି-ଯାଇଛି ଓ ମାମୁଁ ଗାଁ ଛାଡ଼ି ପଳେଇ ଯାଇଛନ୍ତି । ସେଇଦିନଠୁ ମାମୁଁଙ୍କୁ ଗାଁରେ ଖୋଜାଚାଲିଛି । ମାମୁଁ ମିଳି ନାହାନ୍ତି ।

ଗାଁ ଚଉକିଆ ହରିହର ଜେନା ଦିନରେ ୨ୟ ନମ୍ବରରେ ଲେଖକ (ଅଭିରାମ) ନିକଟକୁ ଯାଏ ଓ ମାମୁଁଙ୍କ ଖବର ପଚାରେ । କିଛି ପାଏନି, ଫେରିଆସେ । ଲେଖକ ନିକଟରେ ହରିହରଜେନା ତାର ପୂର୍ବ ଜୀବନ ଓ ଗୃହକଥା ବିଷୟରେ ବିଭିନ୍ନ କଥା ବଖାଣି ବସେ ।

ଟାଉନର ପଟ୍ଟନାୟକର ଗାଁରେ ଅନୁ ନାଁରେ ବିଭିନ୍ନ କୁତ୍ସାରଟନା ହେଲା । ତଥାପି ପଟ୍ଟନାୟକ ଭଣ୍ଡାମି କରି ବରଘର ଠିକଣା ହୋଇଥିବାର ସମ୍ବାଦ ଦେଲା ଓ ଏ ବାବଦ ପରିଶ୍ରମକୁ ପାଞ୍ଚଶ ଟଙ୍କା ଠିକ୍ ହେଲା । ବର ଆସି ସାରିବାପରେ ପଟ୍ଟନାୟକ ଟଙ୍କା ଦାବୀ କଲାରୁ ବୁଢ଼ା ପରେ ଦେବବୋଲି ପ୍ରତିଶ୍ରୁତି ଦେଲା । ମାତ୍ର, ବିଷଧର ପଟ୍ଟନାୟକ ଏହାର ଆକ୍ରୋଶରେ ବରକୁ ଶିଖେଇ ନେଇଯାଇଛି । ବର ପୋଖରୀ ଘାଟକୁ ଯାଇ ଆଉ ଫେରିନି । ବିବାହ ହୋଇପାରିନାହିଁ । ପଧାନବୁଢା ମୁଣ୍ଡରେ ବଜ୍ରାଘାତ ହୋଇଛି । ଏହି ପ୍ରକାର ଅପମାନରୁ ରକ୍ଷାପାଇବା ପାଇଁ ଅନୁ ଆତ୍ମହତ୍ୟା କରିବାକୁ ଯାଇଛି । ଠିକ୍ ଏ ସମୟରେ ମାମୁଁ ପହଞ୍ଚି ଅନୁକୁ ଉଦ୍ଧାର କରି ଆଣିଛନ୍ତି । ମାମୁଁ ଅଭିରାମ ( ଲେଖକ )ଙ୍କୁ ଅନୁକୁ ବାହା ହେବାପାଇଁ ଆଦେଶ ଦେଇଛନ୍ତି । ସେ ସଂଗେ ସଂଗେ ସେଠାରୁ ଗୃହ ଯାଇଛନ୍ତି । ମାମୁଁଙ୍କ ଆଗମନ ବାର୍ତ୍ତା ପୋଲିସ ଶୁଣିଛି ଓ ଆସି ତାଙ୍କୁ ଖୋଜୁଛି । କିନ୍ତୁ ପାଇନାହିଁ । ଏ ପ୍ରକାର ଭଣ୍ଡାରି ସମ୍ବାଦରେ ପଟ୍ଟନାୟକ (ଇନ୍‌ଫର୍ମର) ଲଜ୍ଜିତ ହୋଇଛି ।

ଅଭିରାମର ବିବାହ ଅନୁ ସଙ୍ଗରେ ହୋଇଯାଇଛି । ଦିନେ ରାତିରେ ଅଭିରାମର ଘରେ ନିଆଁ ଲାଗିଛି । ଘରଭିତରେ ଯେଉଁମାନେ ଥିଲେ ସଭିଏଁ ବାହାରକୁ ଆସିଯାଇଛନ୍ତି ମାତ୍ର ଭଉଣୀ ତାହାର ଭିତରେ ରହିଯାଇଛି । କେହି ଭିତରକୁ ଯିବାକୁ ସାହସ କରିନାହାନ୍ତି । ଇତ୍ୟବସରରେ ମାମୁଁ

କେଉଁଠାରୁ ଆସି ନଈଁ ଭିତରୁ ହାରକୁ ଉଦ୍ଧାର କରନ୍ତି । ମାମୁଁଙ୍କ ଦେହ ଓ ଚଳ'ପା ପୋଡ଼ ଫୋଟକା ହୋଇ ଯାଇଛି । ଠିକ୍ ଏ ସମୟରେ ଗାଁରେ ପୋଲିସ ପହଞ୍ଚି ଯାଇଛି ଓ ମାମୁଁଙ୍କୁ ଏରେଷ୍ଟ କରି ଗୁଆଁଘରେ ନେଇ ଯାଇଛି ।

ହରଗୁଣି ଜେନାର ଖବର ଯଦି ସତ ହୋଇଥାଏ ତେବେ ମାମୁଁ ଜେଲ୍‌ଖାନାରୁ ପଳାଇ ଯାଇଛନ୍ତି ।

ଏଇ ସମୟ ଭିତରେ ଗାଁରେ ଗୋଟିଏ ବିରାଟ ପରିବର୍ତ୍ତନ ଆସି ଯାଇଛି । ମଫସଲଟି ସହର ହୋଇଯାଇଛି । ଗାଁରେ ଦୁଇଟି ଯାତ୍ରାଦଳ ସୃଷ୍ଟି ହୋଇଛି । ଗାଆଁର ଶ୍ୟାମ ମାଣେ ଜମି ବିକି "ବାଣୀ ଥିଏଟର" ଓ କାଳିଆ "ବୀଣାପାଣି ନାଟ୍ୟସମାଜ" ଗଢ଼ିଛନ୍ତି ।

ଅଭିରାମର ପ୍ରଥମ ହୋଇ ଜନ୍ମ ହୋଇଥିବା ସଂତାନର ଏକୋଇଶିଆ ହୋଇଛି । ଏହି ଉତ୍ସବରେ ଶ୍ୟାମ ଓ କଳିଆ ପାର୍ଟିର ନାଟକ ଅଭିନୟ ହୋଇଛି । ଶ୍ୟାମ ପାର୍ଟିର 'କଂସବଧ' ଓ କଳିଆ ପାର୍ଟିର "ସୀତା ବନବାସ" ହୋଇଛି । ଦୁଇଟି ଦଳ କିଛି ଦୂର ବ୍ୟବଧାନରେ ମୁହାଁମୁହିଁ ହୋଇ ନାଟକ କରନ୍ତି । କଳିଆ ତରଫ୍ ବଳରାମ କାଣ୍ଡୀ ଦଳର ହନୁମାନର ଗର୍ଜନରେ ଦର୍ଶକ ମଣ୍ଡଳୀ ମୁଗ୍ଧ ହୋଇ ଦେଖୁଥିବା ବେଳେ ଶ୍ୟାମଦଳର ଅସୁର ଓ କୃଷ୍ଣବଳରାମ ଯୁଦ୍ଧ ଆରମ୍ଭ ହୋଇଯାଇଛି । କାଣ୍ଡୀ ଦଳର ନାଟକରେ ଏକ ଅଦ୍ଭୁତ ପରିବେଶ ସୃଷ୍ଟି ହୋଇଛି । ସୀତା ସ୍ୱାମୀ ରାମଚନ୍ଦ୍ରଙ୍କ ସହ ବନବାସ ଯିବାପାଇଁ ଅଳି କରୁଁ କରୁଁ ପରଦା ଅନ୍ତରାଳସ୍ଥ ବ୍ୟକ୍ତି ବିଶେଷର ବଡ ମଗାଶୁଣି ନାୟିକା ସୀତାମଧ୍ୟ ରାମଚନ୍ଦ୍ରଙ୍କୁ ବଡଟିଏ ପ୍ରାର୍ଥନା କରୁଛନ୍ତି । ଏହି ଅପ୍ରତ୍ୟାଶିତ ପରିବେଶରେ

ଦର୍ଶକମଣ୍ଡଳୀ ମଧ୍ୟରେ ଭଗଂ ହସର ଲହରୀ ଖେଳିଯାଇଛି । ଦର୍ଶକମାନଙ୍କ ମଧ୍ୟରୁ କେହି ପରିହାସରେ କାଣ୍ଡୀ, ଫାଟିଗଲା ହାଣ୍ଡି’ କହି ପକାଇଛି । ମଞ୍ଚ ଅନ୍ଧକାର ହୋଇଯାଇଛି ।

( ଉପନ୍ୟାସଟି ଅସଂପୂର୍ଣ୍ଣ ରହି ଯାଇଛି )

## କଣାମାମୁଁର ଚରିତ୍ରସମୂହ—

**କ**ଣାମାମୁଁ—କୌଣସି ଏକ ଅନାଶ୍ରିତ କାରଣ ବଶତଃ ମାମୁଁଙ୍କର ଆଖିଟିଏ ନାହିଁବୋଲି ଗାଁର ସଭିଏଁ ତାଙ୍କୁ କଣାମାମୁଁ ବୋଲି କହନ୍ତି । ସିଏ ଯାହାହେଉ- ନାହିଁମାମୁଁଠାରୁ କଣାମାମୁଁ ଭଲ- ନ୍ୟାୟରେ ସେ ପିଲଠୁଁ, ବୁଢ଼ାଯାଏଁ ସଭିଙ୍କର ମାମୁଁ । ଏଇ ଆଖିର କାଣତ୍ୱ ଉପରେ ଯେ ଯେତେ ପ୍ରକାର ତଥ୍ୟର ସନ୍ଧାନ ପାଇଥିଲେହେଁ ସବୁଯାକ ଭୁଲ । କେବଳ ଏଇଟା ନିହାତି ସତ ଯେ ଥରେ ଲେଖକଙ୍କ ଗାଁକୁ ବରଟିଏ ଆସିଥିଲା ବାହା- ହେବାକୁ । ରୋଶନି ପାଇଁ ଆଣିଥିବା ବାଣମାନଙ୍କ ଭିତରୁ ଗୋଟିଏ ନଫୁଟି ଜଳିମି ଯାଇଥିଲା । (ଉହରି) ମାମୁଁ ସାଂଗ ମାନଙ୍କ ଚହିଁକାରେ ଫୁଟାଇବା ପାଇଁ ଗଲାବେଳେ ବାଣଟି ଆପେ ଆପେ ଫୁଟି ଯିବାରୁ ମାମୁଁଙ୍କ ଆଖିରେ ଲାଗିଗଲା । ସେଇଦିନଠୁ ମାମୁଁ ହେଲେ କଣା ।

ଗାଁରେ ମାମୁଁଙ୍କଠାରେ ପର ବୋଲି କେହିନାହିଁ । ସମ୍ପଦ, ବିପଦ ବେଳେ ମାମୁଁ ସବୁଠାରେ ଠିଆ । ତାଙ୍କ ନିଜ ଘର ବୋଲି କିଛି ନାହିଁ । ଯ’ଘରେ ଯେମିତି ଯେଉଁଦିନ ମାମୁଁ କୁଣିଆ ହେଲେ କାହାର ଆପତ୍ତି ନାହିଁ । ତାଙ୍କ ସାଂସାରିକ ନୀତି ହେଉଛି- ବସୁଧୈବ କୁଟୁମ୍ବକଂ ।

ଏଇ ଅଦ୍ଭୁତ ଚରିତ୍ର ଉପନ୍ୟାସର କ୍ଷୁଦ୍ର ବୃହତ୍ ପ୍ରତ୍ୟେକ ଚରିତ୍ର ସହିତ ସମ୍ପର୍କ ରଖିଛି । ପୋଲିସ ଜଗୁଆଳୀ ହରୁର ଜେନା ଚଉକିଦାର ମୁହଁରେ ମଧ୍ୟ ମାମୁଁ ପାଇଁ ସହାନୁଭୂତି ଓ ପ୍ରଶଂସା ଶୁଣାଯାଇଛି ।

ଏପରି ଏକ ମଫସଲ ଗାଁପାଇଁ ମାମୁଁ ଅବାଗିଆ ଯୁବକ ମାନଙ୍କର ଏକ ଭୟର ସାମଗ୍ରୀ ହୋଇଛନ୍ତି । ଅଝଟ ପିଲାଙ୍କପାଇଁ ମାମୁଁ ନାମର ଭୟଙ୍କାରିତା ଯଥେଷ୍ଟ । ଅନ୍ୟାୟରେ ଭୋଜି କରିବାପାଇଁ ଚୋରିକରି ନେଇଥିବା ଛେଳି ସେ କୌଶଳର ସହିତ ହାତେଇ ମାଲିକୁ ଫେରେଇ ଦେଇଛନ୍ତି । ଶିଙ୍ଗୁଡ଼ି'ମାରି ବାଡ଼ିରୁ କୋଳି ଚୋରିକରି ଖାଉଥିବା ବେଳେ ସେ ପହଞ୍ଚିଯାଇ କୃଷ୍ଣଭାଇ ଓ ଲେଖକଙ୍କୁ ମାରିଛନ୍ତି । ପିଲାମାନେ ପୋଖରୀର ପାଣି ଗୋଳିଆ କରୁଥିବା ସମୟରେ ତାଙ୍କୁ ଜବତ୍ କରିଛନ୍ତି । ନିରୀହ ବସ୍ତିବାଲାଙ୍କ ପାଇଁ ମାମୁଁ ହେଉଛନ୍ତି ସାକ୍ଷାତେ ପଞ୍ଚାୟତର ଦେବତା । ତାଙ୍କର ନିଷ୍କପଟ ନ୍ୟାୟବତ୍ତା ଯୋଗୁଁ କୌଣସି ପିତା ବା ଅଭିଭାବକ ଆଜିଯାଏ ଅଭିଯୋଗ କରିବାକୁ ଆସି ନାହାନ୍ତି ।

ମାମୁଁ ହେଉଛନ୍ତି ବଡ଼ପଦର ବନ୍ଧୁ । ଆଖଡ଼ା ଘରେ ପିଲାମାନେ ପଧାନବୁଢ଼ା ବାଡ଼ପଟ ପୋଖରୀରୁ ମାଛ ଚୋରି କରିବାକୁ ଯାଇ ଧରା ପଡ଼ିବା ଉପରେ । ଅଗତ୍ୟା ମାମୁଁ ପୋଖରୀବୁଢ଼ା ଗଛଉପରୁ ଲମ୍ଫପ୍ରଦାନ କରି ପିଲାଙ୍କୁ ବଞ୍ଚାଇଛନ୍ତି ।

ମାମୁଁ ଅପାଠୁଆ । ପାଠ କଣ ସେ ଜାଣିନାହାନ୍ତି । ମାତ୍ର ବୁଦ୍ଧିମତ୍ତା ଯୋଗୁଁ ଏ ଦୁର୍ବଳତାକୁ ଦୂର କରିଦେଇ ପାରିଛନ୍ତି । ଆଖଡ଼ାଘରେ କାଏ କାଏ କେଉଁ ଜିନିଷ ରଖିବାର ତାଲିକା କଲାବେଳେ ନିଜ ହସ୍ତାକ୍ଷର ଭଲ ନୁହେଁ ବୋଲି ଅନ୍ୟକୁ ଲେଖିଦେବାକୁ କହନ୍ତି । ମାତୃବତ୍ ଚାଣକ୍ୟଙ୍କ ଅନୁସାରେ- 'ପ୍ରାପ୍ତେ ତୁ ଷୋଡ଼ଶେ ବର୍ଷେ ପୁତ୍ରଂ ମିତ୍ର- ମିବାଚରେତ୍'- ମାମୁଁ ଜାଣିଛନ୍ତି । ଯେଉଁ ପିଲା ଗତକାଲି ତରୁଣ ଥିଲେ, ଆଜି ଯୁବକ ହୋଇ ସାରିଲେଣି । ଏଣୁ ସେ କୌଶଳର ସହ ପିଲାଙ୍କୁ ବନ୍ଧୁତା ସୂତ୍ରରେ ଆବଦ୍ଧ କରିଛନ୍ତି । ପିଲାଙ୍କୁ ସଙ୍ଗୀତର ମଧୁମୟତା ପ୍ରତି

ଆକୃଷ୍ଟ କରାଇଛନ୍ତି ଓ ନିଜେ ଉତ୍ସାହିତ ହୋଇଛନ୍ତି । ଗାଁକୁ ଆସିଥିବା ସର୍କସ ପାର୍ଟିକୁ ବିଭିନ୍ନ ସାହାଯ୍ୟ ଦେଇ ଅନେକ ଜ୍ଞାନ ହାସଲ କରିଛନ୍ତି । ସର୍କସପାର୍ଟି ଚାଲିଯାଇ ସାରିବା ପରେ ପିଲାଏ ଲଗେଇଛନ୍ତି ସେପରି ଏକ ସର୍କସ କରିବା ପାଇଁ, କିନ୍ତୁ ସର୍କସରେ ବାଘ ଭାଲୁ ରଖି ଖେଳ ଦେଖାଇବାର ବିଷମ ପରିସ୍ଥିତି ବିଷୟରେ ବୁଝାଇ ସେଥିରୁ ବାରଣ କରିଛନ୍ତି । ଦଣ୍ଡ, ବୈଠକ, ଗଦା ଓ ତଲବାର ବୁଲା ଇତ୍ୟାଦି ଶିଖିବା ପାଇଁ କହିଛନ୍ତି । ପିଲାମାନେ ମାନିଛନ୍ତି । କ୍ରମାନ୍ୱୟରେ ପିଲାଙ୍କ ମଧ୍ୟରେ ଦେଖାଦେଇଛି ଏକତା ।

ମାମୁଁ ହେଉଛନ୍ତି ସମସ୍ତ ପ୍ରକାର ଅନୁଭୂତିର ଏକ ଭଣ୍ଡାର । ସେ ଅନୁଭୂତି ସତ ହେଉ ବା ମିଛହେଉ ବର୍ଣ୍ଣନା ଓ ସଂଯୋଜନାର ଚାତୁରୀରେ ସେ ତାକୁ ଜୀବନ୍ତ କରିପାରନ୍ତି । ସେ ନବଗଡ଼ ନାମଧେୟ ଏକ ରାଜ୍ୟର ରାଜାଙ୍କ ପୁଅବୋଲି କଥାପ୍ରସଂଗରେ କହନ୍ତି । କାଶୀ ବାବାଜୀ, କର୍ଣ୍ଣାଟୀ ଓସ୍ତାଦ ଓ ଗୋଆଲିଆର ଓସ୍ତାଦଙ୍କ ସଂଗୀତଜ୍ଞତା ତଥା ସଂଗୀତ ମାଧ୍ୟମରେ ଅଦ୍ଭୁତ କୌଶଳ ପ୍ରଦର୍ଶନ ଇତ୍ୟାଦି ଏକ ସ୍ୱୟଂ ଅନୁଭୂତିକ ସଦୃଶ କହନ୍ତି । ପୁନଶ୍ଚ, ସଂଗୀତର ଉଲ୍ଲେମ ବଲ୍ଲେମ ବୀଣା, ମୋହନା ମେଘମହ୍ଲାର ବସନ୍ତ ଇତ୍ୟାଦି ରାଗର ସୂଚନା ଦିଅନ୍ତି ।

ଧୂର୍ତ୍ତକତା ଉପରେ କୌଣସି ଜ୍ଞାନ ନ ଥିଲେ ସୁଦ୍ଧା,ଓ ଯୁବମନସ୍ତତ୍ତ୍ୱ ଉପରେ କୌଣସି ବିଚାର ନ ଥାଇ ସୁଦ୍ଧା ସେ ହୋଇ ପାରିଥିଲେ ଏପରି ଦଳେ ହୁଁବାଗିଆ ଯୁବକମାନଙ୍କର କର୍ଣ୍ଣଧାର । ପ୍ରତ୍ୟେକ ବିଷୟରେ ମାମୁଁଙ୍କୁ କିଛି ନ ପଚାରି ପିଲାଏଁ କିଛି କରନ୍ତି ନାହିଁ ।

ଶୃଙ୍ଖଳା ଉପରେ ମାମୁଁଙ୍କ ଜ୍ଞାନ ଅତୀବ ପ୍ରଶଂସମୀୟ । ବୁଢ଼ା ବୈରାଗୀଖାଁ

ଆସି ଆଖଡ଼ା ଘରେ ମଜାମଜା କଥା କହୁଥିବାବେଳେ ସେ ଲୁଷ୍ଠନ ଆଦି ମଧ୍ୟରେ ଭଣ୍ଡାମି ଆରମ୍ଭ କରିଛନ୍ତି ।

ମାମୁଁଙ୍କ ସରଳ ଜୀବନ ଯାପନରେ ବାଧା ଦେଇଛି ଏକ ସାମାନ୍ୟ ଘଟଣା ଯାହାର ଅହେତୁକ ଅନେକ ଦୂରକୁ ପ୍ରସାରିତ ହୋଇଛି । ଗାଁକୁ ପହଞ୍ଚି ଯାଇଛନ୍ତି ଦଳେ ଚୋର ଓ ସେମାନେ ପଧାନ ଘରର ସମ୍ପତ୍ତି ଲୁଟକରି ପଧାନ ବୁଢ଼ାର ଏକମାତ୍ର ନାତୁଣୀ ଅନୁକୁ ନେଇ ଯାଇଛନ୍ତି । ଆଖଡ଼ା ପିଲାଏ ଜାଣିପାରି ଅନ୍ତତଃ ଝିଅକୁ ଖୋଜିବାପାଇଁ ଗାଆଁର କଆଁବଣରେ ଯାଇ ପହଞ୍ଚିଛନ୍ତି । ସେଠାରୁ ସେମାନେ ପିସ୍ତଲଟିଏ ଓ ଅନୁକୁ ପାଇଛନ୍ତି ।

ମାମୁଁ ସମାଜର ଏକ ଜୀବ । ସମାଜର ସ୍ତ୍ରୀମାନଙ୍କ ଲଜ୍ଜା ସଂପର୍କରେ ତାଙ୍କର ଜ୍ଞାନଅଛି । ସକାଳ ନ ପାହୁଣୁ ଅନୁକୁ ସେପରେ ହେଉ ଘରେ ପହଞ୍ଚାଇ ଦେବାପାଇଁ ପିଲାଙ୍କୁ କହୁଛନ୍ତି କାରଣ ଏ ବିଷୟ ବାହାରେ ପଡ଼ିଯିବାର ଆଶଂକା ସେ କରିଛନ୍ତି ।

ଅନ୍ୟଦିନ ଗାଁକୁ ମୁନ୍‌ସୀ ଓ କେତେକ ସିପାହୀ ପହଞ୍ଚି ରାତିରେ ଘଟିଯାଇଥିବାର ଘଟଣାର ଅନୁସନ୍ଧାନ କରିଛନ୍ତି । ପ୍ରକୃତ ଚୋର ସଂପର୍କରେ ଅନୁସନ୍ଧାନ ନ କରି ସେ ମାମୁଁଙ୍କୁ ଅପମାନ ସୂଚକ ବାକ୍ୟବାଣ ପ୍ରୟୋଗ କରିଛି ଓ ଆଖଡ଼ାଘର ପିଲଙ୍କ ଜରିଆରେ ଏପରି ଚୋରି କରୁଥିବା ବିଷୟ ନେଇ ଅଯଥା ସନ୍ଦେହ କରିଛି । ମାମୁଁଙ୍କ ନିଜପ୍ରତି ଅସମ୍ମାନର ସୀମା ବଳି ଯାଇଥିବାରୁ ସେ ଆଉ ସହ୍ୟକରି ପାରିନାହାନ୍ତି । ମୁନ୍‌ସୀର ଗାଲରେ ସେ ଯେତେବେଳେ ଅତିଶୟ କ୍ଷୁବ୍ଧ ହୋଇ ବ୍ରହ୍ମ ଚାପୁଡ଼ାଟିଏ କଷିଛନ୍ତି, ମୁନ୍‌ସୀ ମୁର୍ଚ୍ଛା ହୋଇଯାଇଛି । ମାମୁଁଙ୍କ ଜାତକରେ ଅନ୍ୟାୟ ଅତ୍ୟାଚାର ସହ୍ୟ କରିବାର ନାହିଁ ।

ହଠାତ୍ ବନେ ମାମୁଁଙ୍କର ଆବିର୍ଭାବ ଘଟିଛି, ଅନୁ ଆତ୍ମହତ୍ୟା କରୁଥିବା ବେଳେ । ମାମୁଁ ଲେଖକଙ୍କୁ ( ଅଭିରାମ ) ଆଦେଶ ଦେଇଛନ୍ତି ଅନୁକୁ ବିବାହ କରିବାକୁ । ଫଳରେ ଫଳରେ ଅନୁର ବାହାଘର ହୋଇ ଯାଇଛି । ପଧାନ ବୁଢା ମହାଖପ୍ପି । ପଟ୍ଟନାୟକ ଲୋକ ମୁହଁରେ ଲୁଣ ଭଳି ରହିଯାଇଛି । ମାମୁଁ ଅଦୃଶ୍ୟ ହେଲେସୁଦ୍ଧା କାଗ୍ଯୁାଟିଛରେ ଘୁଷୁରି ଭଳିଆ ଦୂରେଇ ଥାଇ ଗାଁର ହାନି ଲାଭର ସବୁ ତଦାରଖ କରିଛନ୍ତି ।

ପୋଲିସ ଯେତେବେଳେ ମାମୁଁଙ୍କୁ ପାଇଲା ନାହିଁ ଚକ୍ରାନ୍ତ କରି ଲେଖକଙ୍କ ଘରେ ନିଆଁ ଲଗେଇ ଦେଇଛି । ଘର ଜଳିଛି । ଲେଖକଙ୍କ ଭଉଣୀ (ହୀରା) ଘର ଭିତରେ ରହି ଯାଇଛି । ଜଳନ୍ତା ଘର ଭିତରକୁ ଅଭିରାମ ଯିବାକୁ ଉଦ୍ୟତ ହେଉଥିବା ବେଳେ ମାମୁଁ କେଉଁଆଡ଼ୁ ଆସି ପବନ ବେଗରେ ନିଆଁ ଭିତରକୁ ଯାଇ ହୀରାକୁ ବଞ୍ଚେଇଛନ୍ତି । ହୀରାକୁ ବଞ୍ଚେଇ ମାମୁଁ ନିଜେ ପୋଡ଼ି ଯାଇଛନ୍ତି । ଏ ସୁଯୋଗରେ ପୋଲିସ ମାମୁଁଙ୍କୁ ଏରେଷ୍ଟ କରିଛି । ମାମୁଁ ନିଜପ୍ରତି ଭ୍ରୂକ୍ଷେପ ନକରି ଗାଁର ମଂଗଳ ନିମିତ୍ତ ବିପଦ ବରଣ କରିଛନ୍ତି ।

ସେଇ କଣାମାମୁଁ ସାର୍ବଜନୀନ ମାମୁଁର ସମ୍ବନ୍ଧ ମଧ୍ୟରେ ରହି-ଯାଇଛନ୍ତି ।

**ପଟ୍ଟନାୟକ** - କଣାମାମୁଁ ଉପନ୍ୟାସରେ ଖଳ ଚରିତ୍ର ହେଉଛି ଗାଁର ପଟ୍ଟନାୟକ । ଯୁବକମାନଙ୍କ ଅଗ୍ରଗତିରେ ସେ ସବୁବେଳେ ମନ୍ଦ କାମନା କରିଛି । ସେ ଦେଖାଦେଇଛି, ସୁନ୍ଦର-ସୁଗଠିତ-ସୁସଂପାଦିତ ଏକ ଅନୁଷ୍ଠାନର ଧୂମକେତୁ ରୂପରେ ।

ପଧାନଙ୍କରର ଗ୍ରେଷଠାରୁ ପଟ୍ଟନାୟକ ଉପନ୍ୟାସ ମଞ୍ଚରେ ଅବତରଣ କରିଛି । ସମ୍ଭବତଃ, ଏଇ ଯୁବକମାନଙ୍କ ଏକତ୍ର ପ୍ରତିଦ୍ୱନ୍ଦ୍ୱୀ ଧାଭିବଣ ହୋଇ ।

ପଧାନ ବୁଢ଼ାର ସର୍ବସ୍ୱ ଧ୍ୱଂସ କରିବା ନିମିତ୍ତ ପଞ୍ଚନାୟକ ଦୂରରୁ ତାର ଏକ ଦୁର୍ବଳ ଦିଗ ପ୍ରତି ଲକ୍ଷ୍ୟ ରଖିଥିଲା । ସୁଯୋଗ ଆପେ ଆସି ଜୁଟି ଯାଇଛି ।

ପଞ୍ଚନାୟକ ହେଉଛି ସୁଯୋଗବାଦୀ । ମାମୁଁଙ୍କର ବ୍ରହ୍ମଗ୍ରଜା ମୁନ୍‌ସୀର ଗଣ୍ଡଦେଶ ଯେତେବେଳେ ସ୍ପର୍ଶ କରିଛି, ପଞ୍ଚନାୟକ ଆପେ-ଆପେ ଖସି ଯାଇଛି । ବିରମାଡ଼ ଦେଖି କୋଳଥ ଚେପା । ମୁନସୀର ଚେତନା ଆସିଲା ପରେ ସେ ଡ଼କେଇଛି ପଞ୍ଚନାୟକକୁ । ସରବତ ଯୋଗାଡ଼ରେ ଯାଇଥିଲା ବୋଲି ପଞ୍ଚନାୟକ କଥାଟାକୁ ବାଆଁରେଇ ଦେଇଛି । ଆଖଡ଼ା ଦଳଟାକୁ ଭଙ୍ଗି ଦେବାପାଇଁ ସେ ମୁନ୍‌ସୀକୁ କହୁଛି ।

ପଞ୍ଚନାୟକର ଆକ୍ରୋଶଭାବ ଆଦୌ ଯାଇନି । ଅନୁକୁ ବୈରାଗବା ଦିନଠାରୁ ସମସ୍ତଙ୍କଠାରେ ଗୋଟିଏ ଆଲୋଚନାର ବିଷୟ ହୋଇ ପଡ଼ିଛି । ଏଥିପାଇଁ ଆତ୍ମମର୍ଯ୍ୟାଦା ଦୃଷ୍ଟିରୁ ପଧାନବୁଢ଼ା ଚିନ୍ତିତ ହୋଇ ପଡ଼ିଛି । ପଞ୍ଚନାୟକ ମଧ୍ୟସ୍ଥି ହୋଇ ଥାର୍ଡ଼କ୍ଲାସ ପାଏଁ ପଢ଼ିଥିବା ଗୋଟିଏ ବରକୁ ଅତି କଷ୍ଟରେ ଯୋଗାଡ଼ କରିଛି । ବିଭିନ୍ନ ପ୍ରକାର ଆଳ ଦେଖାଇ ସେ ପଧାନ ବୁଢ଼ାଠାରୁ ଗୁଡ଼ାଏ ଟଙ୍କା ମାରିନେବାର ସୁବିଧା ପାଇଛି ।' ବର ବେଦୀକୁ ଉଠିଲା ବେଳକୁ ପଞ୍ଚନାୟକ ତାର ଦାବୀ କରିବସିଛି । ପଧାନ ବୁଢ଼ା କନ୍ୟା ବିବାହଟି ବଢ଼େଇ ଦେବାପାଇଁ ବ୍ୟସ୍ତ ହୋଇ ଉଠିଛି । ପାଉଣା ମିଳିବାର ବିଳମ୍ବ ହେବରୁ ବରକୁ ଶିଖାଇ ପେଟ କାଟିବାର ବାହାନା ଦେଖାଇ ବରକୁ ପୋଖରୀପାଣି ପାଇଁ ନେଇଯାଇଛି । ବର ଆଉ ଫେରିନି । ପଧାନବୁଢ଼ା ଉପରେ ପଞ୍ଚନାୟକ ଏପରିଭାବେ ପ୍ରତିଶୋଧ ନେଇଛି ।

ଅନୁକୁ ରକ୍ଷାକର ମାମୁଁ ଗାଁରେ ପହଞ୍ଚିଯାଇଛନ୍ତି ଓ ପଞ୍ଚନାୟକଙ୍କ

ଭିତର ଖବରରେ ପୋଲିସ ଆସି ପହଞ୍ଚିଲା ବେଳକୁ ମାମୁଁ ସେଠାରୁ ପଳାଇ ସାରିଥିଲେ । ପଟ୍ଟନାୟକ ଦାରୋଗାଠାରୁ ଗୁଡାଏ ଗାଳିଶୁଣିଛନ୍ତି ଏ ପ୍ରକାର ଭ୍ରାନ୍ତ ସନ୍ଦେଶ ପଠେଇଥିବା ଯୋଗୁଁ ।

ପଟ୍ଟନାୟକ ଅତି ଚତୁର । ପୋଲିସ ଦାରୋଗାକୁ ଡାକେଇଥିବା ଯୋଗୁଁ ଦାରୋଗାଙ୍କ ଖାଦ୍ୟ ପାନୀୟର ଖର୍ଚ୍ଚ ନିଜ ଉପରେ ପଡ଼ିବା ଭୟରେ ପଧାନ ବୁଢ଼ା ଉପରେ ସବୁ ପକେଇ ଦେଇଛି ।

ଅଭିରାମର ଘରପୋଡ଼ି ଘଟଣାରୁ ମାମୁଁ ଧରା ପଡ଼ିଛନ୍ତି । ଆଇନ ଆଖିରେ ଦୋଷୀ ମାମୁଁଙ୍କୁ ଆଶ୍ରୟ ଦେଇଥିବା ଅପରାଧରେ କୃଷ୍ଣ ଓ ଅଭିରାମ ଗିରଫ ହୋଇଛନ୍ତି । ପଟ୍ଟନାୟକ ସେମାନଙ୍କୁ ପୋଲିସରୁ ଜାମିନ୍‌ରେ ଆଣିଛି । ପଧାନ ବୁଢ଼ା ମରିବାପୂର୍ବରୁ ମିଠା ମିଠା କଥା କହି ପଟ୍ଟନାୟକ ତାର ପାଉଣା ପାଇଛି ଓ ଅଭିରାମ ଉପରେ ନଜର ରଖିଥିବ ବୋଲି ପ୍ରତିଶ୍ରୁତି ଦେଇଛି ।

ଏ ଯୁଗର ମଫସଲର ମାମଲତକାର ମାନଙ୍କର ପ୍ରତିନିଧି ହେଉଛି ପଟ୍ଟନାୟକ ।

**ହଗୁରି ଜେନା**— ମୁନସୀକୁ ମାଡ଼ ମାରିବା ପରେ ମାମୁଁ ଅନ୍ତର୍ଦ୍ଧାନ ହୋଇଛନ୍ତି ଓ ଗାଁର ହଗୁରି ଜେନା ଚଉକିଦାର ହାତରେ ପୋଲିସ ମାମୁଁଙ୍କର ଖବର ଦେବାପାଇଁ ଦାୟିତ୍ୱ ଦେଇଛି ।

ପୋଲିସର ପ୍ରତିନିଧିତ୍ୱ ଓ ଗୋଇନ୍ଦାଗିରି କରୁଥିଲେ ମଧ୍ୟ ହଗୁରି ଜେନାର ମାମୁଁଙ୍କପ୍ରତି ସହାନୁଭୂତି ଅଛି । ସେ ସବୁ ବୁଝିପାରେ । ମୂର୍ଖ

ହୋଇଥିଲେହେଁ ତାର ହୃଦୟ ଅଛି । ସେଠ ବିକଳରେ ଏ ପେଷା ଆବୋରଥିବା କଥା ଲେଖକଙ୍କ ଆଗରେ ଅନେକଥର କହିଛି । ସେ କହେ ମା ଝିଅ କେହି ଶାସ୍ତା ନୁହନ୍ତି ହେଲେ ସେଠ ଆଗରେ ସମସ୍ତପ୍ରକାର ଇଜ୍ଜତକୁ ସେ ବର୍ଜି କରିବାକୁ ପଡ଼ୁଏ ନାହିଁ ।

ଜଗନ୍ନାଥ ଓ ଆଖଣ୍ଡଳମଣିଙ୍କ ନିକଟରେ ତାର ଅଗାଧ ବିଶ୍ୱାସ । ପଦପଦକେ ସେଇ ଭଗବାନଙ୍କୁ ସାକ୍ଷୀରଖେ । ସେଦିନ ମାମୁଁ ମୁନ୍‌ସୀକୁ ଦେଇଥିବା ଶାସ୍ତିର ପ୍ରଶଂସା କରେ ।

ତାର ଭାଷାରେ ଇଂରେଜ ସରକାର ହେଉଛି କୁଂପୁନି ଆଉ ରଜା ହେଉଛନ୍ତି ଗରଡେଶ୍ୱର । ସରକାରଙ୍କଠାରୁ ପାଇଥିବା ଲଣ୍ଠନଟି ହେଉଛି ନମିଠଣ । ଭଂଗା ଲଣ୍ଠନଟା ତାର କର୍ମର ସାକ୍ଷୀ ଓ ବ୍ୟକ୍ତିତ୍ୱର ଗର୍ବ ।

ସେ ତାର ଜୀବନର ଅନେକ କାହାଣୀ କହେ । ବୟସ ଥିଲାବେଳେ ତାକୁ ଗରଡେଶ୍ୱରର ନାଁ ଶୁଣି ବାଘ ମଧ୍ୟ ବାଟ ଛାଡ଼ି ଦେଉଥିଲା ।

ଅନୁକୁ ଉଦ୍ଧାର କରିଥିବା ମାମୁଁଙ୍କ ବିଷୟରେ ଇନ୍‌କୁଆରିରେ ଆସିଥିବା ପୋଲିସ ମାମୁଁଙ୍କ କୌଣସି 'ଖବର ନ ପାଇବାରୁ ହବିଲଦାର-ଜେନାର ମାମୁଁ ସହିତ ଭିତରିଆ ସଲଅଛି ବୋଲି ମିଛରେ ଗୁଡ଼ାଏ ଫଜିତ ଶୁଣେ । ତାର ଚାକିରି ଚାଲିଯିବା ନିଶ୍ଚିତ ଜାଣି ସେ ମୁଣ୍ଡିଆ-ମାରି ବଞ୍ଚିଯାଏ ।

ଅଭିରାମର ଘରପୋଡ଼ିରେ ସେ ସନ୍ଦେହ କରେ ଚକ୍ରୀ ପଟ୍ଟନାୟକକୁ । କାରଣ ପଟ୍ଟନାୟକର ଅସଲ ରୂପକୁ ସେ ଚିହ୍ନେ ।

ନବାଗତ ସାଇକେଲ ଉପରେ ତାର ବିରାଟ ଧାରଣା । ତାର ବାଇଶିଟି କଳ ଅଛି ବୋଲି ତାର ନାମ ବାଇଶିକଳ । ସାହେବ ଆଣିଥିବା ଫନଗରଫ (ଗ୍ରାମୋଫୋନ୍) କମିତି କରି କଳ ମୋଡିଦେଲେ ଗୀତ ଗାଏ ସେ ବିଷୟରେ ସେ କହେ ।

ହରୁର ଜେନାର ପୂର୍ବରୁ ଆମେ ଫକୀର ମୋହନଙ୍କ ଗୋବରା ଜେନାର ଦର୍ଶନ ପାଇଛୁ । ଦୁହେଁ ଚୌକିଦାର । ଗୋବରା ଜେନା ହେଉଛି ରାମଚନ୍ଦ୍ର ମଙ୍ଗରାଜଙ୍କ ହାତବାଙ୍କୁଶୀ । ତାଙ୍କୁ ଅନ୍ୟାୟ ପଥରେ ଟାଣି ନେବାପାଇଁ ସେ ଚମ୍ପାର ସହଧର୍ମୀ, ଅନ୍ୟାୟଜଳରେ ବୁଡ଼ି କେବେ-ହେଲେ ସେ ନ୍ୟାୟର କୂଳ ପାଇନାହିଁ । ମାତ୍ର ଗରିବ ହରୁର ଜେନା ପୋଲିସର ଡାହାଣ ହାତ ହୋଇଥିଲେ ସୁଦ୍ଧା ପଟ୍ଟନାୟକଙ୍କୁ ନାୟକ କଣାମାମୁଁ ବିରୁଦ୍ଧରେ କୌଣସି ବିଷୟରେ ଖବର ଦେଇଥିବା କଥା ସମ୍ପୂର୍ଣ୍ଣ ଉପନ୍ୟାସରେ ଦେଖାଯାଏ ନାହିଁ । ବରଂ, ତାର ସରଳ ହୃଦୟ ନିମିତ୍ତ ସମଗ୍ର ପାଠକର ସଦୟ ଦୃଷ୍ଟି ଆକର୍ଷଣ କରିଛି । ଅବଶ୍ୟ କଥାବସ୍ତୁ ଦୃଷ୍ଟିରୁ ଫକୀର ମୋହନଙ୍କ ଗୋବରା ଜେନା ଓ ଲକ୍ଷ୍ମୀକାନ୍ତଙ୍କ ହରୁର ଜେନା ସ୍ୱ ସ୍ୱ ପାରଦର୍ଶିତା ପ୍ରମାଣ କରିଛନ୍ତି । ଗୋବରା ଜେନା ଯେପରି ମଙ୍ଗରାଜଙ୍କୁ କୁଟିଳ ପଥକୁ ଟାଣି ନେବାରେ ଆଂଶିକ ଦାୟୀ, ହରୁର ଜେନା ସେପରି ନୁହେଁ ।

## ମିଆଁ ବୁଢ଼ା ବୈରାମ ଖାଁ—

କଣାମାମୁଁ ଉପନ୍ୟାସର ଅନ୍ୟ ଚରିତ୍ର ହେଉଛି ମିଆଁ ବୁଢା ବୈରାମ ଖାଁ । ଏ ଚରିତ୍ରରେ ବିଶେଷତ୍ୱ କିଛି ନାହିଁ । ସେ କେବଳ ଆଖଡ଼ା ଘରର ପିଲାଙ୍କ ମନରେ ଏକ ମୁଉଜ ସୃଷ୍ଟି କରିବା ପାଇଁ ଆସିଛନ୍ତି ।

ବୃଦ୍ଧାବସ୍ଥାରେ ମଧ୍ୟ ବୁଢ଼ା ନାତିମାନଙ୍କର ଟିକିଏ ସଂଖ୍ୟା ଲଢ଼ିବାପାଇଁ ବ୍ୟଗ୍ର ।

ମିଆଁବୁଢ଼ାର କଥାନୁସାରେ ତାର ଯୁବକାବସ୍ଥାରେ ଅନେକ ମାଲଙ୍କ ସଂଗେ ଲଢ଼େଇ କରିଛି । ଏଣୁ ସେ ଅଭ୍ୟାସ ଟିକିଏ ରହିଯାଇଛି । ମାମୁଁ ଯେତେବେଳେ ତାକୁ ଆଣି ଆଖଡ଼ା ଘରେ ପହଞ୍ଚେଇଛନ୍ତି ତାଙ୍କ ମଜା ମଜା କଥାରେ କୁସ୍ତି ଟିକିଏ ଥଟ୍ଟା କରିଛି ମାତ୍ର ବୁଢାର ବାର୍ଦ୍ଧକ୍ୟପ୍ରତି ସମ୍ମାନ ପ୍ରଦର୍ଶନପୂର୍ବକ ତାକୁ ଗାଳି କରିଛନ୍ତି ।

ଧର୍ମର ବିଭିନ୍ନ ଶବ୍ଦ ଉପରେ ବୁଢ଼ା ଅପୂର୍ବ ବିଶ୍ଳେଷଣ କରେ । ମକ୍କା ଗଲେ ଲୋକେ ହଜଯାନ୍ତି ବୋଲି ତାଙ୍କୁ 'ହାଜି' କୁହାଯାଏ । ଲଙ୍କା ପାରିହୋଇ ମକ୍କା ଯିବାକୁ ପଡ଼େ । ମକ୍କା ଗଲେ ଦାଢ଼ିର ରଂଗ ଆପେ ଆପେ ଜାଫ୍ରାନି ହୋଇଯାଏ । ସରବତ୍ ( ଖଜୁରିଗଛର ରସ ) ହେଉଛି ଆସ୍ମାନ୍କା ପାନି । ମହାଦେବ ତାଙ୍କୁ ସବୁଦିନେ ପିଅନ୍ତି । ଦିନେ ମହାଦେବଙ୍କ କଳସକୁ ମୂଷା ନେଇଗଲା । ସେ ଆଉ ପାଇଲେ ନାହିଁ । ସେ ଖୋଜି ଖୋଜି କ୍ଳାନ୍ତ ହୋଇପଡ଼ିଲେ । ତାଙ୍କୁ ଶୋଷ ହେଲା । ସେ ଖଜୁରି ଗଛତଳେ ବସି ମିଠାପାଣି ପିଇବାକୁ ଲାଗିଲେ । ତାଙ୍କୁ ନିଶା ହେବାରୁ ମାଟି ଉପରେ ଶୋଇ ଚିଁ ଚିଁ ପିଇବାକୁ ଲାଗିଲେ । ପାର୍ବତୀ ମହାଦେବଙ୍କୁ ଖୋଜି ଖୋଜି ଶେଷରେ ପାଇଲେ । ସେ ଆଜ୍ଞାଦେଲେ ଯେ ଖଜୁରି ଗଛରେ ରସଯାକ ଗଛର ଉପର ଅଂଶରେ ରହିବ ।

ମାମୁଁଙ୍କ ବ୍ୟବହାରରେ ମିଆଁ ବୁଢ଼ା ଖୁବ୍ ସନ୍ତୁଷ୍ଟ । ମାମୁଁ ଚାଲି ଯିବାରୁ ବୁଢାର ମନ ମଧ୍ୟ ଭାଙ୍ଗିଯାଇଛି । ସମାଜର ମଣିଷ ସେ । ଅନୁର ପୁଅପାଇଁ ଉପହାର ଦେଇଛି ।

ବୁଢ଼ାମିଅାଁ ଏକ କ୍ଷୁଦ୍ର ଚରିତ୍ର ହେଲେହେଁ ଦ୍ରାକ୍ଷା ସଦୃଶ ନିଷ୍ଟତା ଭରି ରହିଛି । ଉର୍ଦ୍ଦୁ, ପାର୍ଶି, ହିନ୍ଦିମିଶା ଓଡ଼ିଆସହ ହିନ୍ଦୁ ଓ ମୁସଲମାନ୍ ଧର୍ମର ଅପୂର୍ବ ସମନ୍ୱୟିତା ଅତୀବ ଆମୋଦପ୍ରଦ ।

## ଅନ୍ୟାନ୍ୟ ଗୌଣ ଚରିତ୍ର—

**କ**ଣାମାମୁଁର ଅନ୍ୟାନ୍ୟ ଚରିତ୍ର ଯଥା:- ଲେଖକ ( ଅଭିରାମ ), କୁକୁନି, ପଣ୍ଡିଆ, ମୁନ୍ସୀ, ଦାରୋଗା, ପଧାନବୁଢ଼ା, ଅନୁ ଇତ୍ୟାଦି ଚରିତ୍ର ମୁଖ୍ୟ କଥାବସ୍ତୁକୁ ଶୀର୍ଷରେ ପହଞ୍ଚେଇ ଦେବାପାଇଁ ବିଶେଷ ଯତ୍ନଶୀଳ । ସେମାନେ ଯେପରି ରତ୍ନାକରଙ୍କ ଅଭିମୁଖୀ ଏକ ଏକ ସରିତ ।

**ଲେ**ଖକ ନିଜକୁ ଅଭିରାମ ଭାବରେ ନାମିତ କରିଛନ୍ତି ଓ ଘଟନାପୂର୍ଣ୍ଣ କରିଛନ୍ତି । ଉପନ୍ୟାସର ପ୍ରତ୍ୟେକ ଘଟଣାକୁ ସେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିଛନ୍ତି ଓ ପ୍ରତ୍ୟେକ ସ୍ଥାନରେ ଉପସ୍ଥିତ ଅଛନ୍ତି । ମାମୁଁଙ୍କ ପଟ୍ଟଶିଷ୍ୟ ରୂପେ ସେ ଅଭିନୟ କରିଛନ୍ତି । ମାମୁଁଙ୍କ ନିର୍ଦ୍ଦେଶରେ ସେ ଅନୁକୁ ବାହାକରି ପଧାନ ବୁଢ଼ାର ମାନରକ୍ଷା କରିଛନ୍ତି । ପଟ୍ଟନାୟକ ଏ ସବୁର ପ୍ରତିଶୋଧ ନେବାପାଇଁ ତାଙ୍କ ଘର ପୋଡ଼ି ଦେଇଛି । ମାମୁଁଙ୍କ ନିମିତ୍ତ ସେ ଗିରଫ୍ ହୋଇଛନ୍ତି ।

**ମୁନ୍ସୀ** ଚରିତ୍ର ହେଉଛି ଇଂରେଜ ଅମଳର ପୋଲିସ ଅଫିସରର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ବିଶେଷତଃ, ଆଗନ୍ତୁ ତାଙ୍କୁ ଜଣାଇ ନ ଥିବାରୁ ପଧାନଘରୁ ଚୋରି ହେବାର ସ୍ୱାଭାବିକତା- ତାଙ୍କ ମୁହଁରୁ ଶୁଣିବା ଏକ ହାସ୍ୟରସର ବିଷୟ । ପ୍ରକୃତ ଚୋରକୁ ନ ଧରି ମାମୁଁଭଳି ଏକ ନିର୍ଦ୍ଦୋଷ ବ୍ୟକ୍ତିଙ୍କ ଉପରେ ଦୋଷାରୋପ କରିବା ମୁନ୍ସୀ ଭଳି ଏକ ପୋଲିସ କର୍ମଚାରୀର ଯଥାର୍ଥ ଚିତ୍ର ।

ଉତ୍କ୍ରାନ୍ତକାଳୀ ମଫସଲିଆ ମାମଲତକାର ମାନଙ୍କ ଶରବ୍ୟ ହେଉଥିବା ନିରୀହ ବ୍ୟକ୍ତିମାନଙ୍କ ମଧ୍ୟରୁ ପଧାନ ବୁଢ଼ା ଜଣେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବୁଢ଼ା ନିଜକଥା ରଖିବାପାଇଁ ବ୍ୟଗ୍ର ହୋଇଛି । ନାତୁଣୀ ଅନୁକୁ ସମାଜର ବଜାରରେ ଛକିବାପାଇଁ ଉଦ୍‌ବନ୍ଧ ହେବା ବେଳେ ପଟ୍ଟନାୟକ ଭଳି ମଧ୍ୟସ୍ଥିର ବିପଦରେ ସନ୍ଧ୍ୟବେଳେ ପଡ଼ୁଛି । ଅପମାନରେ ପକେଇବା ପାଇଁ ଯତ୍ନଶୀଳ ହୋଇଉଠିଛି । ଦୁଷ୍ଟଲୋକ ହାବୁଡ଼ରୁ ରକ୍ଷା ପାଇବାପାଇଁ ପଟ୍ଟନାୟକ ଭଳି ମଣିଷକୁ ଜାଣି ଜାଣି ସବୁଠାରେ ତାର ସାହାଚର୍ଯ୍ୟର ଆବଶ୍ୟକତା ପଧାନବୁଢ଼ା ଅନୁଭବ କରୁଛି ।

**ଅନୁ** ଏକ ମଫସଲି ଝିଅ । ରଂଗ କଳା । ଦୁର୍ଭାଗ୍ୟକୁ ପଡ଼ିଯାଇଛି ଗୈରଙ୍କ ହାତରେ । ପଟ୍ଟନାୟକ ଏ ସୁଯୋଗ ନେଇ ନାନା ପ୍ରକାର କୁତ୍ସାରଟନା କରୁଛି ଗାଁରେ । ନିଜର ଉଦ୍ଦେଶ୍ୟ ହାସଲ ହେବାର ବିଳମ୍ବ ଦେଖି ପଟ୍ଟନାୟକ ବରକୁ ବାହୁଡ଼ାଇବା ଦେଖି ଅନୁ ନିଜକୁ ଦୋଷୀ କରୁଛି ଓ ଆତ୍ମହତ୍ୟା କରିବାକୁ ଉଦ୍ୟମ କରୁଛି ।

**ଅନୁ** ହୃଷ୍ଟୀ ହେଲେହେଁ ସେ ଚୂପଚୂପ୍ ଦୁନିଆଁର ସବୁ ବିଷୟ ନିରୀକ୍ଷଣ କରେ । ବାହାବେଳେ ସେ କପର କାନ୍ଦିବ- ଏହା ଗାଁରେ ସମସ୍ତଙ୍କର ଏକ ଆଲୋଚ୍ୟ ବିଷୟ ହୋଇପଡ଼େ । ବିବାହବେଳେ ସମସ୍ତଙ୍କୁ ଧରି ବାହୁନି କାନ୍ଦିବାର କୌଳିକ ରୀତିରୁ କାଣିଚାଏ ଊଣା ହୋଇ ନ ଥିବା ଦେଖି ସମସ୍ତେ ସମ୍ଭୀଭୂତ ହୋଇପଡ଼ିନ୍ତି । ତା ଭଳି ଝିଅର ଭାଗ୍ୟରେ ଅଭିରାମ ଭଳିଆ ବର ଯୁଟିଛି ।

**କୁଷ୍ମନ୍ ଓ ଟଶିଆ** ଚରିତ୍ର ଲେଖକର ସହାୟକ । ପ୍ରତ୍ୟେକ ସ୍ଥଳରେ ଲେଖକଙ୍କୁ ସାହାଯ୍ୟ କରିବାକୁ ଓ ତାଙ୍କ ସଂପଦ-ବିପଦର ସଖା ହୋଇଛନ୍ତି ସେମାନେ ।

## କଣାମାମୁଁର ହାସ୍ୟରସ—

ଓଡ଼ିଆ ସାହିତ୍ୟାକାଶରେ ଫକୀର ମୋହନଙ୍କ ପରେ ହାସ୍ୟରସ ସମ୍ବଳିତ ଗଳ୍ପ ଲେଖିବାର କାଂତକବିଙ୍କ ପର୍ଯ୍ୟନ୍ତ ଆଉ କେହି ଦେଖାଯାଇ ନ ଥିଲେ । ପଲ୍ଲୀ ଜୀବନର ଦୈନନ୍ଦିନ କର୍ମ ମଧ୍ୟରେ ଯେଉଁ ଉପନ୍ୟାସ ଲୁଚି ରହିଛି ତାର ସଂଧାନ ପାଇଥିଲେ ଫକୀର ମୋହନ, ଯାହାର ଫଳ ସ୍ୱରୂପ ଓଡ଼ିଆ ଗଳ୍ପାଘର ସମୃଦ୍ଧ ହେଲା ପ୍ରାୟଶ୍ଚିତ, ଲଛମା, ମାମୁଁ, ଛମାଣ ଆଠଗୁଣ୍ଠ ଓ ବିଭିନ୍ନ କ୍ଷୁଦ୍ରଗଳ୍ପ ସମ୍ପଦରେ । ଶିକ୍ଷିତ ଜନମନର ସଂକୀର୍ଣ୍ଣତା ଗ୍ରାମ୍ୟ ଯୁବକ ଯୁବତୀଙ୍କ ସାହେବ ଓ ଶିକ୍ଷିତ ହେବାର ଅପୂର୍ବ ଆକାଂକ୍ଷା ଯେପରି ସେମାନଙ୍କୁ ଭିନ୍ନଭିନ୍ନ ମନ୍ଦିରଗକୁ ନେଇଚଲା ସେହି ଚରିତ୍ର ମାନଙ୍କୁ ବିଦ୍ରୂପ କରିବାକୁ ସେମାନଙ୍କ ଦି' ଗାଲରେ ଚୂନ ଓ କଳାର ଛାପ ଦିଆଯାଇ ସେମାନଙ୍କୁ ଜଗତର ମଞ୍ଚ ଉପରକୁ ଠେଲି ଦେଇ ହ୍ୱିସିଲ ମାରି ଦିଆଗଲା । ସେମାନଙ୍କ ଅପୂର୍ବ ଦୃଶ୍ୟ ଦର୍ଶକଙ୍କ ଦୃଷ୍ଟି ଗୋଚର ହେଲା । ସେମାନେ ହସିଲେ, ବୁଝିଲେ ।

ଯୁଗଥିଲା, ଯେତେବେଳେ ରାମଚନ୍ଦ୍ର ମଂଗରାଜଙ୍କ ପରି ଲୋକ ସମଗ୍ର ଗାଁଟିକୁ ତଳି ତଳାନ୍ତ କରୁଥିଲେ, ନାଜରପରି ମଣିଷ ନିଜ ଭଣଜା ଉପରେ ଅତ୍ୟାଚାର କରୁଥିଲେ । ଲେଖକ ଯାହାଦେଖେ, ତାହାଲେଖେ । ଲେଖାରେ ବିଭିନ୍ନ ରଂଗ ଦିଏ । ଦର୍ଘଦିନ ଧରି ଯେଉଁ ଫକୀର ମୋହନ ବିଭିନ୍ନ ରାଜାଙ୍କ ପାଖରେ ଚାକିରୀ କରିଥିଲେ, ଉକ୍ତ ସମୟ ମଧ୍ୟରେ ସମାଜର ଉଚ୍ଚନୀଚ ସମସ୍ତ ପ୍ରକାର ଲୋକଙ୍କୁ ଚିହ୍ନିଥିଲେ । ଏଣୁ ତାଙ୍କ ଲେଖାର ପ୍ରତ୍ୟେକ ସ୍ଥାନରେ ଉପଯୁକ୍ତ ଚରିତ୍ରସବୁ ଦେଖାଯାଏ ।

ମାତ୍ର କଣାମାମୁଁର ରଚୟିତା କାଂତକବି ଲକ୍ଷ୍ମୀକାଂତଙ୍କ ସମୟକୁ , ଯୁଗରେ ସାମାନ୍ୟ ପରିବର୍ତ୍ତନ ଆସୁଥିଲା । ମଣିଷମାନେ ( ମଫସଲରେ )

ଆଧୁନିକ ହେବାକୁ ଚେଷ୍ଟା କରୁଥିଲେ ଏବଂ ଆଧୁନିକତା ସେମାନଙ୍କ ଉପରେ ପ୍ରଭାବ ବିସ୍ତାର କରିବାପାଇଁ ବିଶେଷ ଯତ୍ନଶୀଳ ହେଉଥିଲା । ଏଇ କଣାମାମୁଁ ଗାଁର ଉନ୍ନତି ବେଳକୁ ଗ୍ରାମ୍ୟ ଇ ବୋମାଦଳରେ ମିଶିଥିଲେ । ଏ ବେଳକୁ ଗାଁରେ ବଡଖଣ୍ଡରେ ଆଳୁଅସବୁ ଲାଗିଥିଲା ଓ ଶ୍ୟାମ ତଥା କାଣ୍ଡ୍ରୀଦଳର ଆଧୁନିକ ଡ୍ରାମାପାର୍ଟି ମଧ୍ୟରେ ପ୍ରତିଯୋଗୀତା ଆରମ୍ଭ ହୋଇଥିଲା ।

ମହାଭାରତର ବେଲାଳସେନ ସମଗ୍ର ମହାଭାରତ ଯୁଦ୍ଧ ଦେଖିସାରି ଶେଷରେ ସତ କହିଲାଭଳି ମହାବ୍ୟାଧିଗ୍ରସ୍ତ ଲକ୍ଷ୍ମୀକାନ୍ତ ନିଜ ଆଖିରେ ଯାହା ଦେଖିଲେ, ସେ ସବୁ ହିତ ସତ ଲେଖିଗଲେ । ଜାତିସୁଲଭବାପନ୍ନ ହୋଇ ନିଜେ ଆନ୍ଦୋଳନରେ ଭାଗ ନେଇପାରିଲେ ନି ମାତ୍ର ତାଙ୍କ କଳ୍ପିତ କଣାମାମୁଁ ବୋମାଦଳରେ ଯୋଗ ଦେଲେ ।

'ହାସ୍ୟରସ' ଓ 'ସାହିତ୍ୟରେ ହାସ୍ୟରସ' ମହାପାତ୍ରଙ୍କ ସ୍ୱତନ୍ତ୍ର ଦୁଇଟି ପ୍ରବନ୍ଧରୁ ଲେଖକଙ୍କ ଭାବନାର ଅଲୌକିକତା ସ୍ପଷ୍ଟରୂପେ ଜଣାଯାଏ । ଦୁନିଆଁର ଦୈନନ୍ଦିନ ବ୍ୟାପାରର ସାମାନ୍ୟ ବିଷୟ ଉପରେ କମିତି ହାସ୍ୟରସର ବିମଳଝର ସୃଷ୍ଟି ହୋଇଥାଏ ତାହା ସେ ଉକ୍ତ ପ୍ରବନ୍ଧମାନଙ୍କରେ ଜଣାଇଛନ୍ତି ।

'କଣାମାମୁଁ' ହେଉଛି ହାସ୍ୟରସ ପ୍ରଧାନ ଉପନ୍ୟାସ । ଯାର ଆରମ୍ଭ ଯେପରି ହସରେ, ପରିସମାପ୍ତି ମଧ୍ୟ ସେଇ ହସରେ । ମାମୁଁଙ୍କ ସମ୍ବନ୍ଧ ବ୍ୟକ୍ତିଗତ ବିଭିନ୍ନ କାର୍ଯ୍ୟକଳାପ, କାଣରିର ପ୍ରମାଣ । ମାମୁଁଙ୍କ ବିବାହର ଟ୍ରାଜେଡି ପାଠକ ମନରେ ହସର ଫୁଆରା ସୃଷ୍ଟି କରେ ।

" × × × × × ରହିଗଲେ ଏକାବେଳେ । ପାଗପଟକ ଭଳି, ଚଷମା ଚଢ଼ାଇ, ଚକାମାଡ଼ି ବସିଛନ୍ତି । ବାରକ

ଗଉଡ଼ସବୁ ଯେଝାଘରକୁ ମାନ ବଞ୍ଚେଇ ଚଲ୍ । ଯେମିତି ନଦେଖିଲା ହେଲ, ଥିଲା ସେ କନିଆଁର ମା । ଘରୁ ବାହାରପଡ଼ି ଖଣ୍ଡେ ମୁଣ୍ଡି ଗୁଞ୍ଜୁଣୀରେ – ତେଣିକି ଗୋଳଗୁଣି ଗାଁର ଫୁଲଫାଁକିଆ ଟୋକାଏ ଜୁଟିଗଲେ । ବର ତାଙ୍କର ନିଜରୂପ ଧରି ଯାହାକୁ ଆଗରେ ପାଇଲେ, କାହାକୁ ବଧାଏ, କାହାକୁ ଗୁପୁଡ଼ାଏ ପକାଇ ଏକା ନିଶ୍ୱାସକେ ଦେ ଦୌଡ଼ । ବଗୁଲିଆ ଟୋକାଏ, ମାର କଣାକୁ, ଧର କଣାକୁ, କହି ପଛରୁ ଠେକା ଭୂଷା ଗୁଡିକି ବେଳକୁ ସେ ଯାଇ ଝାଁସୀମା ପାର ।”  ( କଣାମାମୁଁ ପୃଷ୍ଠା- ୧୩ )

ମାମୁଁ ନିଜ ଅନୁଭୂତି କହି ଦକ୍ଷିଣୀଆ ଓସ୍ତାଦ କଥା ଉଦ୍ଧାର କରନ୍ତି:-

“ × × × × × ଲୋକଟାର କିନ୍ତୁ ଭାରି ଅହଂକାର । ଦକ୍ଷିଣୀଆ କି ନା ! ମିରିପିକାଇକୁ ଖାଇ ଖାଇ ତାଙ୍କ ହାଡ଼େ ହାଡ଼େ ରାଗ ।”  ( କ' ମା: ପୃ:—୪୭ )

ବୁଢ଼ାମିଆଁ ବୈରାମ ଖାଁର ଅଦ୍ଭୁତ ଓଡ଼ିଆ ମଧ୍ୟ କେତେକ ସମୟରେ ହାସ୍ୟରସ ସଞ୍ଚାର କରେ ଯଥା: –

“ଠିକ୍ ଠିକ୍ ବାନର ଅଉର୍ ଭାଲୁ । ଅସୁର ଲୋଗ୍ ସଇତାନର ବଚ୍ଚା ଅଛି । ଇସିଲିଏ ସେଇ ରୋଜରୁ ବାନର, ଭାଲୁ ଅଉର୍ ରାମକୁ ବହୁତ ଡ଼ରୁଛି ।”  ( କ ମା: ପୃ:—୬୯ )

ମୁନ୍‌ସୀର ଅଭଦ୍ରାମିରେ ମାମୁଁ ଅତ୍ୟନ୍ତ ଅସହ୍ୟ ହୋଇ ଯେତେବେଳେ ମାରିଛନ୍ତି ସେ ସମୟର ବର୍ଣ୍ଣନାଟି ମଧ୍ୟ ସୁନ୍ଦର ହୋଇଛି ।

“ମୁନ୍‌ସୀବାବୁ ଭୂଇଁରେ ପଡ଼ି ଏମିତି ଅଥୟ ହୋଇ ପଡ଼ିଲେ ଯେ ସେଇଠି ଏପାଖ ସେପାଖ ଗଡ଼ି ‘ପିସ୍ତଲ୍ ପିସ୍ତଲ୍’ ବୋଲି ଚିତ୍କାର କରୁ କରୁ

ଦୁଇହାତ ଲଗାଇ ପକେଟ ଅଣ୍ଡାଳିବାକୁ ଲାଗିଲେ । ଭାଗ୍ୟକୁ ପକେଟ ଘୋଡ଼ାକ ଅମାନିଆଁ ହୋଇ ହାତକୁ ବାଟ ଛାଡିଲେ ନାହିଁ । - କିମ୍ବା ଅତି ଅମାନିଆଁ ହୋଇଥିବାରୁ ହାତଯୋଡ଼ାକ ପକେଟ ଭିତରେ ପଶିବାକୁ ବାଟ ପାଇଲେ ନାହିଁ ।” ( କ: ମା: ପୃ:—୧୨୦ )

ଅନ୍ତୁର ବାହାଘର ବେଳରେ ନାହାକଙ୍କ ଘୋଡ଼ାଚଢ଼ା ଅତ୍ୟନ୍ତ ଦାରୁଣ ହୋଇ ପଡ଼ିଛି । ଅଭିରାମ ଓ ଅନ୍ୟାନ୍ୟ ସାଥୀମାନେ ନାହାକଙ୍କ ଘୋଡ଼ା ଚଢ଼ିବାର ସଉକକୁ ନିରୀକ୍ଷଣ କରି ମାଳିକ ସ୍ଥାନ ବଳଖିଆ ଘୋଡ଼ାଟିଏ ନେଇ ଆସିଛନ୍ତି ଓ ନାହାକଙ୍କୁ ଧରାଧରି କରି ଅତିକଷ୍ଟରେ ତା ଉପରେ ବସାଇଛନ୍ତି । ବର୍ଣ୍ଣନାଟି କେତେଦୂର ବାସ୍ତବ ହାସ୍ୟୋଦ୍ଦୀପକ ହୋଇଛି ଥରେ ଦେଖନ୍ତୁ ।

“ଛାଡ଼ିଦେଲା ମାତ୍ରକେ ଗୋଟିଏ ଅଚଡ଼ାପିଲା ଘୋଡ଼ା ପିଠିରେ ପାହାରେ କଷିଦେଲା । ଘୋଡ଼ୀ ପଛ ଦ' ଗୋଡ଼ ଉଠାଇ ହୀଁ-ହୀଁ ହୋଇ ନାଚ ଛାଡ଼ି ମାରିଦେଲା କୁଦାଟାଏ । ଅବଧାନ ଘୋଡ଼ାର ବେକବାଳକୁ ମୁଠାଇଧରି ରହିଗଲେ, କହିଲେ- ନାଇଁ ବାପା, ମୋତେ ଓହ୍ଲାଇଦିଅ । ଘୋଡ଼ାଟା ଭାରି ଦୁଷ୍ଟ ।”

× × × × × × ×

ନାହାକକୁ ଠିକ୍‌ଭାବେ ବସେଇବାପାଇଁ ପିଲାଏଁ ତାଙ୍କୁ ଘୋଡ଼ୀର ପେଟ ତଳଆଡ଼ୁ ଦୁଇଗୋଡ଼କୁ ଖୁବ୍ ଶକ୍ତକରି ବାନ୍ଧି ଦେଇଛନ୍ତି । “ନାହାକ ଦମ୍ଭହୋଇ ବସି କହିଲା – “ଏଥର ହେଇଛି” ଯେମିତି ତୋପଟା ଫୁଟିଛି ଘୋଡ଼ୀ ସିଧା ଧାଇଁଲା ସିଝୁବୁଦା ଉପରକୁ । ଅବଧାନେ ତଳକୁ ଓହଳି ପଡ଼ିଥିଲେ ସୁଦ୍ଧା ପଡ଼ିପାରୁ ନାହାନ୍ତି । ଘୋଡ଼ୀକୁ ଅସନା ଲାଗିବାରୁ ସେ

କେବଳ ନାଚବାରେ ଲାଗିଛୁ ।” ଲୋକମାନେ ବହୁକଷ୍ଟ ପାଇ ତାଙ୍କୁ ଖୋଳି ଆଣିଛନ୍ତି ।

ଅବଧାନେ ଅଚେତ । ପିଣ୍ଡାରେ ଶୁଆଇ ପାଣିଛାଟ ମାରିବାରୁ ସାଷ୍ଟାମ ହୋଇ ଚଅଁ ଚଅଁ କରି ଲୋଟାଏ ପାଣି ପିଇଗଲେ । ଦେହଟା ଯାକ କଣ୍ଟାରେ ଗୁଳି ହୋଇ ଲହୁ ଲୁହାଣ ।

ଅବଧାନ ଶୋଇ ଶୋଇ କହିବାରେ ଲାଗିଥାଏ – ଅଳପେଇଡିଆ, ବଗୁଲିଆ ଟୋକାଗୁଡ଼ାକ ମାରି ପକେଇଲେରେ, ମାରିପକେଇଲେ । ତା କଥାକୁ ଛଳ କରିବାର ବେଳ ନୁହେଁ ସେ ।”

( କ: ମା: ପୃ: ୧୫୨ – ୧୫୪ )

ଉପନ୍ୟାସର ପରିସମାପ୍ତି ବେଳକୁ ଶ୍ୟାମଦଳ ଓ ବଳରାମକାଣ୍ଡୀ ଦଳଙ୍କ ମଧ୍ୟରେ ନାଟକ ପ୍ରତିଯୋଗୀତା ହୋଇଛି । କାଣ୍ଡୀଦଳର "ସୀତା ବନବାସ" ଚାଲିଛି—

"ପ୍ରମ୍ପଟର ପଛରୁ କହିଲା – ପ୍ରାଣେଶ୍ୱର
ସୀତା କହିଲା— ପ୍ରାଣେଶ୍ୱର
ପ୍ରମ୍ପଟର କହିଲା— କି ଦୋଷ ବାଞ୍ଛିବ
ସୀତା— କି ଦୋଷ ବାଞ୍ଛିବ
ପ୍ରମ୍ପଟର— ତୁମ୍ଭେ ଗଲେ ଗୁଡ଼ି
ସୀତା— ତୁମ୍ଭେ ଗଲେ ଗୁଡ଼ି
ପ୍ରମ୍ପଟର— ଏତିକ ମାଗୁଣି
ସୀତା— ଏତିକ ମାଗୁଣି

ପ୍ରମ୍ପଟର ପାଖରେ ଆହୁରି ଦୁଇଚାରି ଜଣ ଛୁଆଡ଼ାହୋଇ ଥାଆନ୍ତି । ତାଙ୍କର ଭିତରୁ ଜଣେ ଜଣକୁ କହିଲା- ଦେ ଖଣ୍ଡେ ବିଡ଼ି ।

ସୀତା ପ୍ରମଥରେ କହିଲ ବୋଲି କହିଦେଲା- ଦେ ଖଣ୍ଡେ ବାଡ଼ି ।
ପ୍ରମଥଙ୍କ ସୀତାକୁ ପଛଆଡ଼ୁ ଦେଲା ବାଡ଼ାଏ କଷି ।
ସୀତା ପାଟିକରି ଉଠିଲା- କିଏ ବେ ଶଳା ।

× × × × × × ×

"ଆନନ୍ଦରେ ସେମାନେ ଯୋଡ଼ାଏ ଖ'ଲି କରାସିନ୍ ଟିଣ ବାଡ଼େଇ ଧୋ ଧୋ କଣ୍ଡୀ, ଧୋ ଧୋ କାଣ୍ଡୀ, ଧୋ ଧୋ କାଣ୍ଡୀ ବୋଲି ମାଙ୍କଡ ହୁରୁଡ଼ା ରଡ଼ ଗୁଡ଼ିଲେ ।"

ଏପରି ହାସ୍ୟରସମୟ ଘଟଣା ବର୍ଣ୍ଣନା ଦ୍ୱାରାରେ ମାମୁଁଙ୍କର ଅସମ୍ଭବ କଥାସବୁର ବର୍ଣ୍ଣନା, ବୈରାମ ଖାଁର ଦ୍ୱନ୍ଦ୍ୱ, ପୁରାଣ ଶାସ୍ତ୍ର ଉପରେ ପାରଦର୍ଶିତା ତଥା ଭଙ୍ଗା ଓଡ଼ିଆ ଶବ୍ଦ ଉଚ୍ଚାରଣରେ ହାସ୍ୟର ସୃଷ୍ଟି ହୋଇଛି ।

## କଣାମାମୁଁର ସାମାଜିକତା—

ସାହିତ୍ୟ ହେଉଛି ସମାଜର ମୁକୁର । ସମାଜର ଗତି ମତି ସାହିତ୍ୟରେ ପ୍ରତିବିମ୍ବିତ ହୋଇଥାଏ ।

କଣାମାମୁଁ ପାଠକଲେ ତତ୍କାଳୀନ ସମାଜର ଛବି ଆମ ସମ୍ମୁଖରେ ଉପସ୍ଥାପିତ ହୁଏ । ଗାଉଁଲି ଗାଁର ବନ୍ଧନ, ଚରିତ୍ର ଓ ସାମାଜିକ ଚଳଣୀ କଣାମାମୁଁରୁ ଜଣାଯାଏ ।

ଉପନ୍ୟାସ ରଚନାର ସମୟକୁ ନିର୍ଣ୍ଣୟ କରିବାକୁ ଗଲେ ଜଣାଯାଏ ଯେ ଏହା ସ୍ୱାଧୀନତାପ୍ରାପ୍ତିର ନିକଟବର୍ତ୍ତୀ ପୂର୍ବ ଓ ପର ସମୟର ରଚନା । ପ୍ରୋକ୍ତ ସମୟରେ ପଲ୍ଲୀଜୀବନ ସହରଜୀବନ ସହିତ ଏକ ସମାନ୍ତରାଳ

ସରଳ ରେଖାରେ ରଖିବାକୁ ଯତ୍ନଶୀଳ ହେଉଥିଲେ । ଗାଁ ମାନଙ୍କର ଆଖଡ଼ା ଘରେ ଗାଁର ଉତ୍ସାହୀ ଯୁବକ ଓ ବୃଦ୍ଧ କୁସ୍ତି କସରତ ଶିଖୁଥିଲେ । କଣାମାମୁଁଙ୍କ ନିର୍ଦ୍ଦେଶନାରେ ଅଭିରାମ, କୃଷ୍ଣ ପ୍ରମୁଖ ଯୁବକମାନେ ଆଖଡ଼ା ଘରେ କସରତ ଆରମ୍ଭ କରିଥିଲେ । ସମାଜରେ ଯାତ୍ରାଦଳସବୁ ଗଢ଼ି ଉଠୁଥିଲା ଓ କଳାରାମ କାଣ୍ଡୀ ତଥା ଶ୍ୟାମଦଳ ସଦୃଶ ଅନେକ ବିବାଦୀ ଯାତ୍ରାଦଳ ନିଜର ନିଜର ବିବାଦୀ ମନୋଭାବ ଲୋକଙ୍କ ସମକ୍ଷରେ ପ୍ରକାଶ କରି ଉପହାସ୍ୟ ହେଉଥିଲେ । ବିଚାର ବୁଦ୍ଧିର ହୀନମନ୍ୟତା ଓ ସାଂଗଠନିକ ଗୁଣର ଅଭାବ ଯୋଗୁଁ ସେମାନେ ଅନେକ ସମୟରେ ହାସ୍ୟାସ୍ପଦ ହେଉଥିଲେ । କାଣ୍ଡୀ ଦଳର "ରାମବନବାସ" ରେ ସୀତାଙ୍କର ବାଡ଼ମରା କଥା ଦର୍ଶକମଣ୍ଡଳୀରେ ଏକ ହସର ଉତ୍ସ ସୃଷ୍ଟି କରିଛି ।

ଯୁଗ ସମାଜର ପ୍ରତ୍ୟେକ ବ୍ୟକ୍ତି ଉପରେ ତାର ପ୍ରଭାବ ପକାଇଥାଏ । ଯେତେବେଳେ ସମଗ୍ର ଭାରତ ବିଦେଶୀ ଶାସନର ଅତ୍ୟାଚାରରେ ଜର୍ଜରିତ, କେତେକ ବ୍ୟକ୍ତି ଦଳବଦ୍ଧ ହୋଇ ଚେଷ୍ଟା କଲେ ହିଂସାତ୍ମକରେ ବରଂ ହେଉ, ବିଦେଶୀ ଶାସନକୁ ଏ ଦେଶରୁ ବହିଷ୍କାର କରିବାକୁ ହେବ । ଭଗତ ସିଂ ଭଳିଆ କେତେକ ନେତା ନିଜର ଷଡ଼ଯନ୍ତ୍ରରେ ଧରାପଡ଼ି ଫାଶୀ ପାଇଥିଲେ । ମାମୁଁ ପୋଲିସଦ୍ୱାରା ଧରାପଡ଼ିବାକୁ ଯିବା ପୂର୍ବରୁ ସେ ଗୋଟିଏ ଦଳସମ୍ପୃକ୍ତ ମିଶିଥିବା କଥା ଲେଖକଙ୍କୁ କହିଛନ୍ତି ।

ସମାଜରେ ପ୍ରଧାନ ବୁଢ଼ା ଭଳିଆ ଏକ ନିରୀହ ଶ୍ରେଣୀର ଲୋକ ଥିଲେ ଯେଉଁମାନେ ଶେଷ ନିଶ୍ୱାସ ନେଉଥିବା ବେଳେ ମଧ୍ୟ ପଟ୍ଟନାୟକ ପରି କୃତଘ୍ନ, ବିଶ୍ୱାସଘାତକ ପାଖରେ ନିଜର ପ୍ରତିଜ୍ଞାରୁ ଟଳିବାକୁ ଇଚ୍ଛା କରୁ ନଥିଲେ । ଅପରଶ୍ରେଣୀର ଚରିତ୍ରମାନଙ୍କ ମଧ୍ୟରୁ ପଟ୍ଟନାୟକ ହେଉଛି ଅନ୍ୟତମ । ନିଜର ସମସ୍ତ ଚେତନାକୁ ଦୂରେଇ ଦେଇ ଅନ୍ୟର ସର୍ବନାଶ

କରିବାକୁ ସେ ସତତ ଉଦ୍‌ଗ୍ରୀବ । ଜୀବନର ଅନେକ ପର୍ଯ୍ୟାୟରେ ଅପମାନିତ ହେଲେ ସୁଦ୍ଧା କୁଟିଳତାକୁ କେବେହେଁ ସେ ଜଳାଂଜଳି ଦେଇନି । 'ବସୁଧୈବ କୁଟୁମ୍ବକମ୍' ପରି ଜ୍ଞାନ କରୁଥିବା ମାମୁଁ ଭଳି କେତେକ ବ୍ୟକ୍ତି ସମାଜରେ ଥିଲେ ଯେଉଁ ଚରିତ୍ରଗୁଡ଼ିକ ଅବଧି ସମାଜରେ କାଁ ଭାଁ ମିଳିଲେ ।

ଲୋକମାନଙ୍କ ମଧ୍ୟରେ ଭୂତ, ଗୁଣି ଗାରୁଡ଼ି ବିଶ୍ୱାସ ଥିଲା । କୃଷ୍ଣନ୍, ଅଭିରାମ ଆଦି ଯୁବକମାନେ ମାଛ ଧରିବାକୁ ଯିବା ପୂର୍ବରୁ ପଧାନବୁଢ଼ା ବାରିପଟ ଗଛଉପରେ ଥିବା ଖପିସ କଥା ସେମାନେ ପ୍ରଥମରୁ ଚିନ୍ତା କରିଛନ୍ତି । ପଧାନବୁଢ଼ା ଚୋରମାନଙ୍କୁ ଧରି ଆସିବାବେଳେ ଗଛଉପର ଖପିସର ଶବ୍ଦରେ ଭୟଙ୍କର ପଳାଇଯାଇଛନ୍ତି । ହଗୁରି କେନା ମଧ୍ୟ ତାର ଅଙ୍ଗେ ନିଭାଇଥିବା କଥା (ବାଘ ବାଉଣୀ ମନ୍ତ୍ର) କହିଛି ।

ଉପନ୍ୟାସର କଥାବସ୍ତୁ ହେଉଛି ପ୍ରାକ୍ ସ୍ୱାଧୀନତା କାଳର । ସେ ସମୟକୁ ବିଚ୍ଛିନ୍ନ ଭାରତର ସ୍ୱପ୍ନ କେହି ଦେଖି ନ ଥିଲେ । ଏଣୁ ସମାଜରେ ଉଭୟେ ହିନ୍ଦୁ ଓ ମୁସଲମାନ୍ ସଂପ୍ରଦାୟ ମଧ୍ୟରେ ପ୍ରୀତି ଓ ବିଶ୍ୱାସ ଥିଲା । ବୁଢ଼ା ବୈରାମ ଖାଁ ଭଲଆ ଲୋକର ମତାମତକୁ ଲୋକେ ସ୍ୱୀକାର କରୁଥିଲେ । ବୈରାମ ଖାଁ ଭଲଆ ଲୋକର କପୋଳକଳ୍ପିତ କଥାକୁ ଲୋକେ ବିଶ୍ୱାସ କରୁଥିଲେ । ଖାଁ ବୁଢ଼ା ହିନ୍ଦୁ ଶାସ୍ତ୍ର ସଂପର୍କରେ ଏତେ ଭ୍ରାନ୍ତ ମତ ଉପସ୍ଥାପନା କରିଥିଲେହେଁ ତାକୁ କେହି ନିଷେଧ କରିନାହାନ୍ତି । ବରଂ, କୃଷ୍ଣନ୍‌ର ସାମାନ୍ୟ ଅଯତ୍ନଶୀଳ ବ୍ୟବହାରରେ ମାମୁଁ କ୍ଷୁବ୍ଧ ହୋଇଛନ୍ତି । ଏଣୁ ଏଥିରୁ ଜଣାଯାଉଛି ଯେ ସମାଜରେ ବୟୋଜ୍ୟେଷ୍ଠ ମାନଙ୍କପାଇଁ ସମ୍ମାନ ଥିଲା ।

ନୂତନ ହୋଇ ଆସୁଥିବା ସଭ୍ୟତାର ଆଲୋକପ୍ରାପ୍ତ ମଫସଲର ଲୋକେ ଆଶ୍ଚର୍ଯ୍ୟ ନୟନରେ ଚାହିଁ ରହୁଥିଲେ । ହଗୁରି କେନାଠାରେ

ଘରଡେଶ୍ୱରର ନିମିଟଣ ଏକ ଅଦ୍ଭୁତ ଜିନିଷ ହୋଇଛି । ଟିପାବତ୍ତି (ଟର୍ଚ୍ଛଲାଇଟ୍) ମାମୁଁଙ୍କୁ ଅତ୍ୟନ୍ତ କୌତୁହଳ ଭିତରକୁ ଟାଣି ନେଇଛି ।

ବିବାହ ମାନଙ୍କରେ ପ୍ରଚଳିତ ଯୌତୁକପ୍ରଥା ଉପନ୍ୟାସରୁ ଜଣାଯାଏ । ଏବର ଭଳି ସମାଜରେ ଲୋକେ ବିବାହ ହୋଇ ଯିବାବେଳେ ବିଭିନ୍ନ ବେଷନାଇ, ବାଣ ନେଇ ଯାଉଥିଲେ । ଝିଅ ପକ୍ଷକୁ ଅନେକ ଅସୁବିଧାରେ ପଡିବାକୁ ହେଉଥିଲା । ଅନୁର ବିବାହ ବେଳେ ପଟ୍ଟନାୟକ ଙ୍କ ଭଳି ସାମାନ୍ୟ କେତୋଟି ଟଙ୍କା ଲୋଭରେ ପଧାନ ବୁଢ଼ାକୁ ଅପମାନ ଦେଇଛି ଏଥିରୁ ଅନୁମେୟ । ବିବାହବେଳେ ପୁରୋହିତ, ନାହାକମାନଙ୍କ ସ୍ଥାନ ଖୁବ୍ ଉଚ୍ଚରେ । ଯେତେବେଳେ ସେମାନେ ଯାହା ଚାହୁଁଥିଲେ ତାହା ପୂରଣ କରିବାକୁ କେହି କୁଣ୍ଠାପ୍ରକାଶ କରୁ ନ ଥିଲେ । ଉଦାହରଣ ସ୍ୱରୂପ ଅନୁର ବାହାବେଳେ ଆସୁଥିବା ବରପକ୍ଷର ନାହାକଙ୍କୁ ଗାଁର ପିଲାମାନେ ଖୋଜି ଖୋଜି ଗୋଟିଏ ଘୋଡ଼ୀ ଠିକଣା କରିଦେଇଛନ୍ତି । ଅନ୍ୟ ଏକ ଅଦ୍ଭୁତ ବିଷୟ ହେଉଛି ବର ଓ କନ୍ୟା ପକ୍ଷରେ ଅନୁଷ୍ଠିତ ହେଉଥିବା ଅନର୍ଥକ ଶ୍ଳୋକଯୁଦ୍ଧ । "ଅସ୍ତି ଗୋଦାବରୀ ତୀରେ" ଓ "ଯଦି ପତନ୍ତି ପକ୍ଷୀ ସମଦ୍ରେଗେ ନବଣାଂ" ପରି ଅସଂପୂର୍ଣ୍ଣ ଅପ୍ରାସଂଗିକ ମୂଲ୍ୟହୀନ ଭଳି ଶ୍ଳୋକରେ କିଛି ଯାଏ ଆସେ ନାହିଁ । ବିବାହବେଳେ ଝିଅ କାନ୍ଦଣା ଗୋଟିଏ ବଡ଼ପ୍ରଥା । ଝିଅ ମାଆ ଘର ଛାଡ଼ି ଗଲାବେଳେ ସମସ୍ତଙ୍କୁ ଧରି ବାହୁନି କାନ୍ଦିବ । ସେ ଯେତେ ରକମର କାନ୍ଦିପାରିଲା ତାର ସେତେ ପ୍ରଶଂସା ।

ସମାଜରେ ନାରୀ ହେଉଛି ସ୍ଫଟିକ ଚତ୍ ଏକ ମୃଣ୍ମୟ ପଦାର୍ଥ । ଦୁନିଆଁ । ହାଟରେ ଯଦି କୌଣସି ଅଭିଆଡ଼ୀ ଝିଅ ନାଁରେ କୁତ୍ସାପ୍ରଚାର ହେଉଥିଲା ତାହାହେଲେ ସେ ଅଗ୍ରାହ୍ୟ ହେଉଥିଲା । ଏଥିଯୋଗୁଁ ପଧାନ ବୁଢା ଯେ କୌଣସି ଉପାୟରେ ଅନୁକୁ ଉଠାଇ ଦେବାକୁ ଚେଷ୍ଟା

କରୁଥିଲା, ଅନୁକୁ ଯେତେବେଳେ ଚୋରମାନେ ନେଇ ଯାଇଛନ୍ତି, ମାମୁଁ ଛାକୁ ଆଖଡ଼ାଘର ପିଲାଙ୍କ ଜରିଆରେ ଉଦ୍ଧାର କରିଛନ୍ତି ଓ ରାତି ନ ପାହୁଣୁ ତାକୁ ଘରେ ପହଞ୍ଚେଇ ଦେବାକୁ ପିଲାଙ୍କୁ କହୁଛନ୍ତି ।

କଣାମାମୁଁ ଉପନ୍ୟାସରୁ ତତ୍‌କାଳୀନ ପୋଲିସର ଅବିବେକତାର ପରିଚୟ ମିଳେ । ଉକ୍ତ ସମୟରେ ପୋଲିସ କପରି ଅନ୍ୟାୟ ଆଚରଣ କରୁଥିଲା ତାହା ଜଣାପଡ଼େ । ପ୍ରଧାନବୁଢ଼ା ଘର ଚୋରିରେ ମୁନ୍‌ସୀ ଆସି ଅଯଥା ହଇରାଣ କରିଛି ବୁଢ଼ାକୁ । ଚୋରିର ଅସଲ ସଂଧାନ ପରିବର୍ତ୍ତେ ମୁନ୍‌ସୀ ମାମୁଁ ଉପରେ ନାକି ଆଖି ଦେଖାଇଛି ଓ ଅନ୍ୟାୟର ସୀମା ଟପି ଯିବାପରେ ସେ ମାମୁଁଠାରୁ ଅସଲ ଛେଚୁଏ ଖାଇଛି । ପୋଲିସକୁ ସେ ସମୟରେ ସମସ୍ତେ ଖୁବ୍ ଭୟ କରୁଥିଲେ । ପୋଲିସ ଆସିଲେ ଲୋକେ ଭୟରେ ଘରଦ୍ୱାର ବନ୍ଦ କରି ଦେଉଥିଲେ । ହଗୁରଜେନା ଭଳିଆ ଲୋକ ଚଉକିଆ କାମ କରିଛି ଓ ମାମୁଁର ସଂଧାନ ପରିବର୍ତ୍ତେ ନିଜର ଅଜ୍ଞାତର ଟନୁଭୁଞ୍ଜକୁ ବଖାଣି ବସିଛି ।

ମଫସଲ ଗୁଡିକ ଧୀରେ ଧୀରେ କପରି ସହର ଆଡକୁ ଗତିକରିଛି ତାର ବର୍ଣ୍ଣନା ସମ୍ୟକ୍ ଭାବରେ ମିଳେ ।

— * ସମାପ୍ତ * —